# ସୂଚୀପତ୍ର

-

# ୧ । ସ୍ୱାଧୀନତା ପ୍ରାଣଠାରୁ ପ୍ରିୟ

୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶାକୁ ମରହଟ୍ଟାମାନଙ୍କ ହାତରୁ ଅଧିକାର କରିନେଲେ । ଓଡ଼ିଶା ପରାଧୀନ ହେଲା । ଇଂରେଜମାନଙ୍କ କୂଟବୁଦ୍ଧିକୁ ସରଳ ଓଡ଼ିଶାବାସୀ ଜାଣିଲାବେଳକୁ ଓଡ଼ିଆ ଜାତି ନିଜର ସବୁ ହରାଇସାରିଥିଲା । ଏହି କଥାର ପ୍ରତିବାଦ କରିବାରୁ ଖୋର୍ଦ୍ଧା ରାଜାଙ୍କ ପ୍ରଧାନମନ୍ତ୍ରୀ ଓ ସେନାପତି ଜୟୀ ରାଜଗୁରୁଙ୍କୁ ବୃଢ଼ାବରରେ ଫାଶୀଦେଇଦିଆଗଲା । ଏମିତି ଇଂରେଜମାନେ ଓଡ଼ିଶାରେ ସେମାନଙ୍କ ଶାସନର ଆରମ୍ଭକଲେ ।

ପାଇକମାନଙ୍କୁ ହନ୍ତସନ୍ତ କରି ସେମାନେ ଭୋଗକରୁଥିବା ଜମିକୁ ଛଡ଼ାଇ ନିଆଗଲା । ଖଜଣାଭାରରେ ପୀଡ଼ିତ ସାରା ଓଡ଼ିଶାରେ ବିଦ୍ରୋହର ସ୍ୱର ଶୁଭିଲା । ସବୁଠୁ ବେଶୀ ପ୍ରତିବାଦ କଲେ ଓଡ଼ିଶାର ବଣ ମୂଲକରେ, ମାଳି ଅଞ୍ଚଳରେ, ଗିରି ପାହାଡ଼ରେ ରହିଆସୁଥିବା ଶାନ୍ତ ସରଳ ପ୍ରକୃତିକୁ ବେଶୀ ଭଲପାଉଥିବା, ପାଣି ପବନ ବଣ ପରି ମୁକ୍ତ ଜୀବନ ବଞ୍ଚୁଥିବା ବନବାସୀ ଗିରିଜନମାନେ ।

ଏହି ଗିରିଜନ ବନବାସୀମାନେ ଥିଲେ ପ୍ରକୃତିର ସନ୍ତାନ । ମଣିଷ ତିଆରି ଶାସନରେ ବାନ୍ଧିହୋଇ ପରାଧୀନ ଜୀବନ ବଞ୍ଚିବା ସେମାନଙ୍କ ପାଇଁ ଅଭିଶାପ ହୋଇଗଲା । ଯେତେବେଳେ ଇଂରେଜ ଶାସକ ଓ ତାଙ୍କୁ ଶାସନରେ ସାହାଯ୍ୟ କରୁଥିବା ଅଳ୍ପସଂଖ୍ୟକ ଲୋକ ଆଦିବାସୀଙ୍କ ସରଳତାର ସୁଯୋଗ ନେଇ ସେମାନଙ୍କ ଜମି ଓ ଜଙ୍ଗଲକୁ ମାଡ଼ିବସିଲେ ଏହାହିଁ ହେଲା ମୂଳକାରଣ ଯେଉଁଥିପାଇଁ ଓଡ଼ିଶାର ଆଦିବାସୀ ଲଢ଼ିଥିଲେ ଫେରିପାଇବା ପାଇଁ ନିଜର ଅଧିକାର । ଜମି ପାଇଁ, ଜଙ୍ଗଲ ପାଇଁ ସେମାନଙ୍କ ଭିତରୁ ଯେଉଁମାନେ ବାହାରି ବିଦେଶୀ ଶାସନ ବିରୁଦ୍ଧରେ ଯୁଦ୍ଧ ଡାକରାଦେଲେ, ନିଜ ଭାଇବନ୍ଧୁକୁଟୁମ୍ବଙ୍କୁ ଏକାଠି କରି ଲଢ଼ି ପ୍ରାଣଦେଲେ, ସେମାନଙ୍କ ତ୍ୟାଗ ଓ ବଳିଦାନର କାହାଣୀ ଓଡ଼ିଶାବାସୀଙ୍କ ସ୍ୱାଧୀନତା ସଂଗ୍ରାମ କାହାଣୀର ଏକ ମହତ୍ୱପୂର୍ଣ୍ଣ ଅଧ୍ୟାୟ ।

ଏହି ସ୍ୱାଧୀନତା ସଂଗ୍ରାମ ଏକ ବିଜାତୀୟ ଶକ୍ତି ବିରୁଦ୍ଧରେ ସଂଗଠିତ ଉଦ୍ୟମ ଥିଲା ଦେଶୀୟ ଆଦିବାସୀମାନଙ୍କର । ଯେଉଁମାନେ ଏହାର ନେତୃତ୍ୱ ନେଇଥିଲେ ସେମାନେ ହେଲେ ସାନ୍ତାଳୀ ବୀର ବିର୍ସା ମୁଣ୍ଡା ଏବଂ ଓରାଓଁ ବୀର ଯାଦା ଭଗତ । ଅନ୍ୟମାନେ ଦୋରା କୋୟାମାନଙ୍କୁ ମାର୍ଗ ପ୍ରଦର୍ଶନ କରିଥିଲେ । ୧୮୦୩ ମସିହାରୁ ୧୯୪୭ ମସିହା ଯାଏ ଓଡ଼ିଶାରେ ଆଦିବାସୀମାନଙ୍କ ସ୍ୱାଧୀନତାପ୍ରିୟ ଜୀବନ ମାନିନଥିଲା ପରାଧୀନତାର ବେଡ଼ି, ଶାସନର ନାଲି ଆଖି, ସୁବିଧା ସୁଯୋଗ ପାଇଲେ ସେ ଶୁଣାଇଦେଇଥିଲା ତାର ମୁକ୍ତିର ସଙ୍ଗୀତ ଶରର ବିଷଲଗା ମୁନରେ, ବର୍ଚ୍ଛାର ଧାରରେ, ଗୋଟିଆ ପଥରରେ ଅବା ଲାଠିର ପ୍ରହାରରେ ।

ବିଦେଶୀ ଶାସକ ଆର୍ଥିକ ସୁବିଧା ପାଇଁ ଆଦିବାସୀମାନଙ୍କଠାରୁ ଜଙ୍ଗଲ ଛଡ଼ାଇନେଲା —ସେମାନେ ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ କରିପାରିବେ ନାହିଁ, ବିକି କରିପାରିବେ ନାହିଁ, ପୋଡ଼ୁଚାଷ କରିପାରିବେ ନାହିଁ ବୋଲି ଆଇନ କଲେ, ଆଉ ଯେଉଁ ଆଦିବାସୀମାନେ ଏହା ନମାନିଲେ ସେମାନଙ୍କୁ ଧରିନେଇ ଦଣ୍ଡଦେଲେ । ଆଦିବାସୀମାନେ ଜାଣିଲେ ଯେ ଏଇ 'ଦିକୁ' ବା ବାହାରର ଲୋକ, ଯେଉଁମାନେ ଅଣଆଦିବାସୀ, କେଡ଼େ ଭୟଙ୍କର, ସ୍ୱାର୍ଥପର, କୁଚକ୍ରୀ ଆଉ ପରଧନ ଛଡ଼ାଇନେଇ ଭୋଗ କରିବାରେ କେଡ଼େ ପାରିବାର । ଅସନ୍ତୋଷର କଳାଗ୍ନି ଯେମିତ ଦୋଡ଼ାଇ ପକାଇଲା ଏଇ ଗିରିଜନଙ୍କୁ ।

ଏଇ କଥା ଓ ବ୍ୟବସ୍ଥାକୁ ଲକ୍ଷ୍ୟକରି ଭାରତକୁ ବେଶୀ ଭଲପାଉଥିବା ଆଉ ଆଦିବାସୀଙ୍କ ସେବାରେ ଜୀବନର ବହୁସମୟ କଟାଇଥିବା ମନୀଷୀ ଭେରିଅର୍ ଏଲ୍‌ଉଇନ କହନ୍ତି :

"ଭାରତର ବିଭିନ୍ନ ଅଞ୍ଚଳରେ (ନେଫାକୁ ଛାଡ଼ି) ଯେଉଁଠି ଆଦିବାସୀଗୋଷ୍ଠୀର ସଂଖ୍ୟା ହ୍ରାସପାଇବାରେ ଲଗିଛି ତାହାର ଅନେକ କାରଣ ମଧ୍ୟରୁ ସେମାନଙ୍କ ଅଶାନ୍ତିର ପ୍ରଥମ କାରଣ ହେଲା ସେମାନଙ୍କ ଜମି ଓ ଜଙ୍ଗଲ ହରାଇବା । ଏହାର ପ୍ରଭାବ ଏତେ ଗଭୀର ଭାବେ ଆଦିବାସୀ ଜୀବନକୁ ପ୍ରଭାବିତ କଲା ଯେ ସେ ଏହାଛଡ଼ା ତାର ଅବନତିର ଅନ୍ୟ କାରଣଗୁଡ଼ିକ ଯେ ରହିଛି ସେ ସେକଥା ଭାବିଲା ନାହିଁ । × × × ଯଦି ଆମେ ଆଦିବାସୀଙ୍କର ବିଦେଶୀ ଶାସନ ବିରୁଦ୍ଧରେ ଚଳାଇରଖିଥିବା ସଂଘର୍ଷକୁ ବିଚାରକୁ ନେବା ତାହେଲେ ଦେଖିବା ଯେ, ସେମାନେ କେବଳ ଏଇ ଜମି ଓ ଜଙ୍ଗଲ ପାଇଁ ସଂଗ୍ରାମ କରିଥିଲେ । ୧୮୩୩ ମସିହାରେ କୋହ୍ଲମାନଙ୍କର ସଂଗ୍ରାମ,୧୮୯୯ ଓ ୧୮୩୨ରେ ଭୋମରମାନଙ୍କ ସଂଗ୍ରାମ କେବଳ ବଳପୂର୍ବକ ସେମାନଙ୍କ ଜମି ଶାସକମାନେ ଛଡ଼ାଇ-ନେବାର ପ୍ରତିବାଦରେ ହୋଇଥିଲା । ଜମିରୁ ସେମାନଙ୍କର ଅଧିକାର ଉଚ୍ଛେଦ ଯୋଗୁଁହିଁ ଭାରତର ହୋ, ମୁଣ୍ଡା, ଓରାଓଁ, ବିଶେଷଭାବେ କ୍ଷତିଗ୍ରସ୍ତ ହୋଇଥିଲେ ।"

ଓଡ଼ିଶାରେ ମଧ୍ୟ ଏହି କାରଣରୁ ଦକ୍ଷିଣ ଓଡ଼ିଶାର ଗଞ୍ଜାମ ଅଞ୍ଚଳରେ ଘୁମୁସର କନ୍ଧଙ୍କ ମେଳି, ୧୭୮୮ ମସିହାରେ ଇଷ୍ଟଇଣ୍ଡିଆ କମ୍ପାନୀ ବିରୁଦ୍ଧରେ ହୋଇଥିଲା । ଇଂରେଜ ସରକାରଙ୍କ ପ୍ରତିନିଧି ଏଡ଼ଓ୍ୱାର୍ଡ଼ କଟ୍‌ସପୋର୍ଡ଼ଙ୍କ ଜଣେ ଆଦାୟକୁ କେନ୍ଦ୍ର କରି ଏହା ହୋଇଥିଲା । ଏହି ମେଳିର ନେତୃତ୍ୱ ଘୁମୁସର ରାଜା କୃଷ୍ଣଭଞ୍ଜ ନେଇଥିଲେ । ବହୁ କନ୍ଧ ସଂଗ୍ରାମୀ ହତାହତ ହୋଇ ଜାତିର ଜନମାନସରେ ଅମର ହୋଇଗଲେ ।

ଅନ୍ୟ ଏକ ମେଳି ପାରଳାଖେମୁଣ୍ଡି ରାଜା ନାରାୟଣ ଦେବଙ୍କ ନେତୃତ୍ୱରେ ଆଦିବାସୀମାନେ କରିଥିଲେ । ଇଂରେଜଙ୍କ ମନୋମୁଖୀ ଶାସନ ବିରୁଦ୍ଧରେ ପ୍ରାଣମୂର୍ଚ୍ଛା ସଂଗ୍ରାମ କରି ତିରିଶିଜଣ ଆଦିବାସୀ ମୃତ୍ୟୁବରଣ କଲେ । ଏହା ପରେ ପରେ ଏହି ଜମି ସଂକ୍ରାନ୍ତ ନିୟମକୁ ନେଇ ଘୁମୁସର, ବଉଦ, ଦଶପଲ୍ଲା, ନୟାଗଡ଼ର ଆଦିବାସୀ ବିକ୍ରମ ଭଞ୍ଜଙ୍କ ପରିଚାଳନାରେ ଏହି ସଂଗ୍ରାମକୁ ତେଜାଇ ରଖିଲେ । ୧୮୧୭ ମସିହା ପାଇକ ବିଦ୍ରୋହକୁ ୪୦୦ କନ୍ଧ ସଂଗ୍ରାମୀ ଘୁମୁସରରୁ ଯାଇ ସହାୟତା ଯୋଗାଇଥିଲେ ।

୧୮୩୭ ମସିହାରେ ପୁଣିଥରେ ଦୋରବିଷୋଇଙ୍କ ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇ ଘୁମୁସରର ରାଜା ଧନଞ୍ଜୟ ଭଞ୍ଜଙ୍କୁ ଗାଦିଚ୍ୟୁତ କରିବା ଷଡ଼ଯନ୍ତ୍ରରେ ଇଂରେଜମାନଙ୍କ ବିରୁଦ୍ଧରେ କନ୍ଧମାନେ ସଂଗ୍ରାମର ସ୍ୱର ଉଠାଇଲେ । ଇଂରେଜ ସରକାର ଦୋରବିଷୋୟୀଙ୍କୁ ଶାସନ ବିରୁଦ୍ଧରେ ବିଦ୍ରୋହୀ ବୋଲି ଘୋଷଣା କରି ଗିରଫ କଲେ ଏବଂ ଅନେକ ଯାତନା ଦେଲେ । ଏହି ବର୍ବର ଯାତନାର ଶିକାର ହୋଇ ୧୮୪୭ ମସିହାରେ ସେ ମୃତ୍ୟୁ ବରଣ କଲେ ।

ଫୁଲବାଣୀର ଚକ୍ର ବିଷୋୟୀ କନ୍ଧମାନଙ୍କୁ ଏକାଠି କରି ଇଂରେଜମାନଙ୍କ କୁଶାସନ ବିରୁଦ୍ଧରେ ସଂଗ୍ରାମ କଲେ । ସେ ଫୁଲବାଣୀର କନ୍ଧମାନଙ୍କ ସାମାଜିକ ଚଳଣି ଓ ଧର୍ମ, ପ୍ରଥା ଓ ପରମ୍ପରା ଉପରେ ଇଂରେଜମାନେ ହସ୍ତକ୍ଷେପ କରିଥିବା କାରଣ ଯୋଗୁଁ ଗାଁ ଗଣ୍ଡା ବୁଲି । ପାହାଡ଼, ପର୍ବତ, ବଣ, ଝୋଲ ଅତିକ୍ରମ କରି ହଜାର ହଜାର କନ୍ଧ ଲୋକଙ୍କୁ ମତାଇ ସେ ଯେଉଁ ଅଭୂତପୂର୍ବ ସଙ୍ଗଠନ କରି ଯୁଦ୍ଧ ଚଳାଇଲେ ତାହା ଓଡ଼ିଶାର ଆଦିବାସୀମାନଙ୍କ ପରତନ୍ତ୍ର ବିରୁଦ୍ଧରେ ଯେଉଁ ଉଦାହରଣ ପରିଚୟ ଦିଏ ତାହା ଯେତିକି ପ୍ରେରଣାପ୍ରଦ ସେତିକି ଆଶ୍ଚର୍ଯ୍ୟଜନକ ।

୧୮୫୫ରେ ଇଂରେଜମାନଙ୍କ ଆର୍ଥିକ ଶୋଷଣ ବିରୁଦ୍ଧରେ ସାନ୍ତାଳମାନେ ସିଦୋ-ମୁର୍ମୁ, କାହ୍ନୁ ମୁର୍ମୁ, ଚାନ୍ଦ ମୁର୍ମୁ ଓ ଭାଇମୁର୍ମୁଙ୍କ ନେତୃତ୍ୱରେ ଯେଉଁ ସଂଗ୍ରାମ କଲେ ତାହାର ଉଦାହରଣ ସେମାନେ ନିଜେ ।

୧୮୫୭ରେ ସମ୍ବଲପୁରର ବୀର ସୁରେନ୍ଦ୍ରସାଏଙ୍କ ପ୍ରେରଣା, ସଙ୍ଗଠନ ଓ ବୀରତ୍ୱରେ ଉଦ୍‌ବୁଦ୍ଧ ହୋଇ ଆଦିବାସୀମାନେ, ବିଶେଷତଃ କନ୍ଧ, ଗୋଣ୍ଡ, ବିନ୍‌ଝାଲ ଓ ସାନ୍ତାଳ ଗୋଷ୍ଠୀ ଯେଉଁ ସଂଗ୍ରାମ କରି ପ୍ରାଣପାତ କଲେ ଇଂରେଜମାନଙ୍କ ଅନ୍ୟାୟ ଓ ଅତ୍ୟାଚାର ବିରୁଦ୍ଧରେ ତାହାର ସମାନ୍ତର ନାହିଁ ।

କୋରାପୁଟ ଜିଲ୍ଲାର ଆଦିବାସୀମାନେ ମଧ୍ୟ ଏହି ଜମି ଓ ଜୋଲର ଅଧିକାର ହରାଇ, ଇଂରେଜ ଶାସନ, ରାଜାରାଜୁଡ଼ାଙ୍କ ଅତ୍ୟାଚାର, ଅନ୍ଧ୍ରରୁ ଆସିଥିବା ତେଲୁଗୁ ରାଜକର୍ମଚାରୀ, ଓଡ଼ିଆ ଶୁଣ୍ଢି ମହାଜନ, ସାହୁକାର, ମୁସ୍ତାଦାର, ନାଏକ, ଶଗଣ୍ଡା, ଚଲାଣଙ୍କ ଅତ୍ୟାଚାରରେ ତଥା ପୋଲିସ ଜମାନ ( କନେଷ୍ଟବଲ ), ଶବନ ( ରେଭେନ୍ୟୁ ଇନ୍‌ସପେକ୍ଟର) ଓ ଫରେଷ୍ଟ ଗାରଡ଼ୁ ( ଗାର୍ଡ )ଙ୍କ ଅକଥନୀୟ ଯନ୍ତ୍ରଣାରେ ପେଷିହୋଇ ଯେଉଁ ସଂଗ୍ରାମ କରିବାର ସଙ୍କଳ୍ପ ନେଲେ ତାହା ୧୮୬୪ ମସିହା ଜୁଲାଇ ମାସରେ ଗୁଣୁପୁର ତାଲୁକାରେ ପୁଟାସିଂ ପୋଲିସ ଥାନାରେ ପ୍ରତ୍ୟକ୍ଷ ହୋଇଥିଲା । ପୁଟାସିଂ ଅଞ୍ଚଳର ଆଦିବାସୀ ସଉରା ଗୋଷ୍ଠୀର ଲୋକମାନେ ଏକତ୍ରିତ ହୋଇ ପୁଟାସିଂର ମୁଖିଆଙ୍କ ଗିରଫର ପ୍ରତିବାଦ କରି ଥାନା ଘେରାଓ କରି ଥାନା ପୋଡ଼ିଦେବା ସଙ୍ଗେ ସଙ୍ଗେ ପାଞ୍ଚଜଣ ପୋଲିସଙ୍କୁ ମଧ୍ୟ ହତ୍ୟା କରିଥିଲେ । ଏହା ଇଂରେଜମାନଙ୍କ ଆଖି ଓ କାନ ବୋଲାଉଥିବା ପୋଲିସମାନଙ୍କ ମାତ୍ରାଧିକ କାର୍ଯ୍ୟର ଫଳ ଥିଲା ।

ତେଣେ ୧୮୭୯ ମସିହାରେ ଇଂରେଜମାନଙ୍କ ଅତ୍ୟାଚାରରେ ବ୍ୟସ୍ତ ବିବ୍ରତ ହୋଇ କୋୟାମାନଙ୍କର ନେତା ତୋମା ଦୋର କୋୟାମାନଙ୍କୁ ଏକାଠି କରି ଆନ୍ଧ୍ରପ୍ରଦେଶର ପୂର୍ବଗୋଦାବରୀ ଜିଲ୍ଲାରେ ଯେଉଁ ସଂଗ୍ରାମ ଚଳାଇଲେ ତାହାର ପ୍ରଭାବ କୋରାପୁଟର ମାଲକାନଗିରିର ବନବାସୀମାନଙ୍କୁ ମଧ୍ୟ ଆକର୍ଷିତ କରିଥିଲା । ୧୯୨୨ରୁ ୧୯୨୪ ଯାଏଁ ଆନ୍ଧ୍ରପ୍ରଦେଶର ବିଦ୍ରୋହୀ ନେତା ଅଲ୍ଲୁରି ସୀତାରାମ ରାଜୁ ଯେଉଁ 'ଫିତୁରୀ' ଆନ୍ଦୋଳନ କଲେ ସେଥିରେ ମାଲକାନଗିରି ଅଞ୍ଚଳର କୋୟା ଓ କୋୟାମାନେ ବିଶେଷ ସହଯୋଗ କରିଥିଲେ । ୧୯୩୨ ସାଲରେ ନାରାୟଣ ପାଟଣାର ପାଇକମାନେ ବିଦ୍ରୋହ କରିଥିଲେ ।

୧୯୩୬ ମସିହାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲାପରେ କୋରାପୁଟ ଓଡ଼ିଶାର ସବୁଠାରୁ ବଡ଼ ଜିଲ୍ଲାଭାବେ ସୃଷ୍ଟି ହେଲା ଯାହାର ଶତକଡ଼ା ୮୩ ଭାଗ ବନବାସୀ ଗିରିଜନ ବା ଆଦିବାସୀ ଗୋଷ୍ଠୀର ଥିଲେ ।

୧୯୩୮ରେ ଏହି ଜିଲ୍ଲାକୁ ମହାତ୍ମାଗାନ୍ଧୀଙ୍କ କଂଗ୍ରେସବାର୍ତ୍ତା ପହଞ୍ଚିଲା ପରେ ସମଗ୍ର ଜିଲ୍ଲାରେ ଥିବା ଆଦିବାସୀମାନଙ୍କ ଭିତରେ ସ୍ୱାଧୀନତା ସଂଗ୍ରାମର ଯେଉଁ ଚେତନା-ଲହରୀ ସମସ୍ତଙ୍କୁ ଛୁଇଁଗଲା ତାହାର ପ୍ରଭାବରେ ୧୯୪୦ ମସିହାରେ ହଜାର ହଜାର ଆଦିବାସୀ କାରାବରଣ କଲେ ।

୧୯୪୨ ମସିହାରେ ଭାରତଛାଡ଼ ଆନ୍ଦୋଳନର ବନ୍ଦନା ଗାଇ କୋରାପୁଟ ଜେଲ୍‌ରେ ୫୦ ଜଣ ସ୍ୱାଧୀନତା ସଂଗ୍ରାମୀ ମୃତ୍ୟୁବରଣକଲେ । ତନ୍ମଧ୍ୟରୁ ତଲିଆଁ, ବଗା ପୂଜାରୀ, ସଦାଶିବ ବେହେରା ଆଦି ଯେତେ ଯେ ଦେଶ ମା' ପାଇଁ ବଳିଦାନ ଦେଲେ ତା'ର କାହାଣୀ ଆଖିରେ ଲୁହ ଆଣେ ।

୨୯-୩-୧୯୪୩ ରେ ମାଲକାନଗିରିର ଗାନ୍ଧୀ, ନିର୍ଭିକ, ସତ୍ୟାଶ୍ରୟୀ, ଅହିଂସାର ପୂଜାରୀ ଲକ୍ଷ୍ମଣ ନାୟକ ବ୍ରହ୍ମପୁର ଜେଲ୍‌ରେ ଫାଶୀ ପାଇ ଅମର ଶହୀଦ ହୋଇଗଲେ । ସେହି ଲକ୍ଷ୍ମଣ ନାୟକଙ୍କ ଜୀବନର ଆଲେଖ୍ୟକୁ ନେଇ ଏହି କାହାଣୀ ।

## ୨ । ସ୍ୱାଧୀନତା ପୂର୍ବର କୋରାପୁଟ

୧୯୩୬ ମସିହା ଏପ୍ରିଲ ୧ ତାରିଖ ପୂର୍ବରୁ ଓଡ଼ିଶା ବୋଲି ଗୋଟିଏ ପ୍ରଦେଶ ନଥିଲା କି କୋରାପୁଟ ବୋଲି ଗୋଟିଏ ଜିଲ୍ଲା ନଥିଲା । ଓଡ଼ିଶା ବୋଇଲେ କଟକ, ପୁରୀ, ବାଲେଶ୍ୱରକୁ ବୁଝାଉଥିଲା । ବାକି ଅଞ୍ଚଳରୁ ସମ୍ବଲପୁର ମଧ୍ୟପ୍ରଦେଶରେ, କେତେକ ଅଞ୍ଚଳ ବିହାରରେ, କେତେକ ବଙ୍ଗପ୍ରଦେଶରେ ଆଉ କେତେକ ଆନ୍ଧ୍ରପ୍ରଦେଶ (ମାଡ୍ରାସ ପ୍ରେସିଡ଼େନ୍‌ସୀ)ରେ ମିଶାଇଦେଇ ଇଂରେଜମାନେ ଶାସନ କରୁଥିଲେ ।

ଓଡ଼ିଆମାନେ ଘାର କାତ ଥିଲେ । ପାଇକ ବିଦ୍ରୋହ ଆଉ ଆଦିବାସୀମାନଙ୍କ ସଂଗ୍ରାମରୁ ଇଂରେଜମାନେ ଏହା ବୁଝିପାରିଥିଲେ । ଏଣୁ ଏମାନେ ଏକାଠି ରହିଲେ ବେଶୀ ଅସୁବିଧା ସୃଷ୍ଟି କରିବେ ଏହି ଆଶଙ୍କାରେ ଓଡ଼ିଆଙ୍କ ମେରୁଦଣ୍ଡ ଭାଙ୍ଗିଦେବା ପାଇଁ ଚକ୍ରାନ୍ତକରି ଓଡ଼ିଶାକୁ ଖଣ୍ଡ ଖଣ୍ଡ କରିଦେଲେ । ଏହି କାରଣରୁ ଓଡ଼ିଶାର ଦକ୍ଷିଣରେ ଥିବା ଜୟପୁର ଅଞ୍ଚଳ ଯାହା ସୂର୍ଯ୍ୟବଂଶୀ ରାଜାମାନଙ୍କ ଦ୍ଵାରା ଶାସିତ ହେଉଥିଲା ତାକୁ ମାନ୍ଦ୍ରାଜରେ ମିଶାଇଦେଇ ଜୟପୁର ରାଜାଙ୍କ ବାର୍ଷିକ ୧୬,୦୦୦ଟଙ୍କା ରାଜସ୍ଵ ବାବଦକୁ ଦେବାକୁ ସ୍ଥିରକଲେ । ଏହି ଜୟପୁର ରାଜାଙ୍କ ଅଧୀନରେ ଯେଉଁ ବିଶାଳ ଭୂମିଖଣ୍ଡ ରହିଲା ତାହା ଉତ୍ତରରେ କଳାହାଣ୍ଡି ଓ ରାୟପୁରଯାଏ, ପଶ୍ଚିମରେ ବସ୍ତର, ଦକ୍ଷିଣରେ ପୂର୍ବଗୋଦାବରୀ ଓ ବିଶାଖାପାଟଣା ଓ ପୂର୍ବରେ ଗଞ୍ଜାମ ଓ ଶ୍ରୀକାକୁଲମ୍‌ଯାଏ ବିସ୍ତୃତ ଥିଲା । ଜୟପୁର ଅଞ୍ଚଳ ଅଧୀନରେ ଗୁଣୁପୁର, ରାୟଗଡ଼ା, କୋରାପୁଟ, ଜୟପୁର, ମାଲକାନଗିରି ଓ ନବରଙ୍ଗପୁର ରହିଥିଲା । କ୍ରମେ ଏହା ୧୯୩୬ ମସିହାରେ ସ୍ଵତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହେବାରୁ କୋରାପୁଟ ଜିଲ୍ଲାରୂପେ ନାମିତ ହେଲା ଏବଂ ଏହାର ଆୟତନ ହେଲା ୯୮୭୫ ବର୍ଗମାଇଲ ।

ଉତ୍ତୁଙ୍ଗ ପଞ୍ଚପାଟମାଳି ପର୍ବତଶ୍ରେଣୀ, ଓଡ଼ିଶାର ଉଚ୍ଚତମ ପର୍ବତ ଦେଓମାଳି ଓ ଅନେକ ପର୍ବତମାଳା, ବଂଶଧାରା, ନାଗାବଳୀ, ଇନ୍ଦ୍ରାବତୀ, କୋଲାବ, ଶାବେରୀ, ସିଲେରୁ ନଦୀ, ଦଣ୍ଡକାରଣ୍ୟ ଓ ଅସ୍ୱାସ୍ଥ୍ୟକର ଜଳବାୟୁ, ହିଂସ୍ର ବନ୍ୟଜନ୍ତୁରେ ପରିପୂର୍ଣ୍ଣ ପ୍ରାକୃତିକ ଦୃଶ୍ୟାବଳୀରେ ଆନନ୍ଦ ଓ ଭୟସଞ୍ଚାର କରୁଥିବା ଓଡ଼ିଶାର ସବୁଠାରୁ ବଡ଼ ଜିଲ୍ଲାକୁ ପ୍ରବେଶ କରିବାକୁ ହେଲେ କେବଳ ଆନ୍ଧ୍ରପ୍ରଦେଶର ସାଲୁର ଘାଟି ଡେଇଁ-ଆସିବାକୁ ପଡୁଥିଲା । ଏହି ଜିଲ୍ଲାର ବହୁ ଅଞ୍ଚଳ ଦୁର୍ଗମ ଥିଲା ।

୧୯୪୧ ମସିହା ବେଳକୁ ଏହି ଜିଲ୍ଲାର ମୋଟ ଲୋକସଂଖ୍ୟା ଥିଲା ୧୧, ୬୭, ୮୬୨ ଯାହାର ଶତକଡ଼ା ୮୩ ଭାଗ ଥିଲେ ବନବାସୀ ଗିରିଜନ । ଗୁଣୁପୁର ଅଞ୍ଚଳର ସଉରା, ରାୟଗଡ଼ା ଅଞ୍ଚଳର କନ୍ଧ ଓ ପରଜା, କୋରାପୁଟ ଅଞ୍ଚଳର କନ୍ଧ ଓ ପରଜା, ଜୟପୁର ଅଞ୍ଚଳର ପରଜା, ଗାଦବା ଓ ଭୂମିଆ, ମାଲକାନଗିରି ଅଞ୍ଚଳର ବଣ୍ଡା ଓ କୋୟା, ନବରଙ୍ଗପୁର ଅଞ୍ଚଳର ଭତ୍ରା, ଗୋଣ୍ଡ ଓ ଏମାନଙ୍କ ବହୁ ଗୋଷ୍ଠୀ ଉପଗୋଷ୍ଠୀଙ୍କ ସଂଖ୍ୟା ପ୍ରାୟ ୯ ଲକ୍ଷ ଥିଲା । ଏହି ଆଦିବାସୀ ସଂସ୍କୃତି, ଧର୍ମଧାରଣା, ଭାଷା, ଜୀବନଯାପନ ପ୍ରଣାଳୀ ଗାଢଗାଢ ପ୍ରକୃତିଦ୍ଵାରା ନିୟନ୍ତ୍ରିତ ହେଉଥିଲା ।

ଏମାନେ ଡିଙ୍ଗିଆର୍କେ, ବୁଢ଼ାଦେଓ, କରୁଂ, ଜଗନ୍ନ, କଙ୍କାଳିନୀ ମାଇ, ମାଓଲି ମାତା ଠାକୁରାଣୀ ମାତା ଆଦି ଦେବଦେବୀଙ୍କୁ ମାନୁଥିଲେ, ପୂଜାକରୁଥିଲେ । ପ୍ରତି ଋତୁରେ ପର୍ବପର୍ବାଣି କରୁଥିଲେ । ଚଇତପରବ, ବିହନ ଯାତ୍ରା, ବାଲିଯାତ୍ରା, ବଉଲାଣି ଯାତ୍ରା, ଦଶହରା, ଦିଆଲିଯାତ୍ରା, ପୌଷ ପୂର୍ଣ୍ଣିମା, ନୂଆଖିଆଯାତ୍ରା କରି ଜୀବନକୁ ଆନନ୍ଦରେ କଟାଉଥିଲେ । ଖୁସିବାସିରେ ଗାଁରେ ଗାଁରେ ସନ୍ଧ୍ୟାହେଲେ ଏମାନେ ଜମାହୋଇ ଗାଉ-ଥିଲେ ଘାଇଲେଢ଼ ଗୀତ, ଚଇତପରବ ଗୀତ, ଛେରଛେରା ଗୀତ । ତରକୁ, କନ୍ଧକୁ,

ଚଢ଼େଇକୁ, ଗଛକୁ, ନଈନାଳକୁ, ପାହାଡ଼ ପର୍ବତକୁ ନେଇ ସେମାନେ ପଦଯୋଡ଼ି ଗୀତଗାଇ ବଡେଇଦେଉଥିଲେ ଖୁବ ।

ଜହ୍ନ ଆଲୁଅରେ, ମହୁଲଆର ମହୁଗୀତାନ, ମାଦଳର ଗୁଡ଼୍‌ଦମ୍, ଚିଡ଼ିବଡ଼ଚୋ ଚିଡ଼ିବଡ଼ ଶବ୍ଦ, ତାପରେ ମନମତାଣିଆ ଶବ୍ଦ, ବଂଶୀ, ଘୁଲୁଡ଼, ଡୁଙ୍ଗଡୁଙ୍ଗାର ବାଦ୍ୟରେ କମ୍ପି ଉଠୁଥିଲା ଗାମୁଣ୍ଡି, ଥରିଯାଉଥିଲା ବଣର ଗୁହାଡ ! ଯୁବକ ଯୁବତୀଙ୍କ ହସ, ନାଚ ଓ ଗୀତରେ ଜୀବନ ହୋଇଉଠୁଥିଲା ରସମୟ, ଆନନ୍ଦମୟ । ଦୁଃଖ ଥିଲା ଜୀବନରେ, ଅଭାବ ବି ଥିଲା, ରକ୍ତକୁ ପାଣିକରି ମାଟିତାଡ଼, ବଣହାଣି, ପଡ଼ଆକୁ ହଠିଆ କରି ସେ ସୃଷ୍ଟି କରୁଥିଲା ଧାନ, ମାଣ୍ଡିଆ, ମକା, ବାଜରା । ଚଳୁଥିଲା କଷ୍ଟେମଷ୍ଟେ । ହେଲେ ଯେତେବେଳେ ସଞ୍ଜ ଆସୁଥିଲା ସେ ପାଲଟିଯାଉଥିଲା ଗୀତଗାଇବାର ମଣିଷ, ନାଚକରିବାର ମଣିଷ । ସେ ସୃଷ୍ଟି କରିନଥିଲା ଭୋଗ ଭାଗ୍ୟ, ଧନସମ୍ପତ୍ତି । ସେ ଜାଣିନଥିଲା ଏସବୁ ଚିରଦିନ ରହିବ ନାହିଁ; ଏଣୁ ସେ ଗାଉଥିଲା "ମୋର ଖାଦ ଖଜା ଲୋଡ଼ାନାହିଁ, ଗୀତ ଅଛି, ଆନନ୍ଦ ଅଛି । ବଣରେ ଜନ୍ତୁ ଅଛନ୍ତି । କୁକୁଡ଼ା ମାଂସରେ ସୁଆଦ, ଘଲପରେ ନିଶା, ଜୀବନରେ ଆଶା ଅଛି ।"

ଏମାନେ ଯେତିକି ସରଳ, କଷ୍ଟପଟୁ, ବିଶ୍ୱାସୀ, ପ୍ରଭୁଭକ୍ତ, ପରିଶ୍ରମୀ, ଅତିଥି-ପରାୟଣ, ଦାନଶୀଳ ଥିଲେ ତାର ତୁଳନା ଅଣଆଦିବାସୀଙ୍କ ସହ କରିବା ଉଚିତ ହେବନାହିଁ । ଏହି ବଣର ମଣିଷ ୧୯୩୬ ମସିହା ବେଳକୁ ବିଦେଶୀ ସରକାର ଓ ରାଜକର୍ମଚାରୀଙ୍କ ଦ୍ୱାରା କପରି ଶୋଷିତ, ଅତ୍ୟାଚାରିତ ହୋଇ ଶିକ୍ଷିତ ମଣିଷକୁ, ଧୋବଧାଉଳିଆଙ୍କୁ ଡରି ଡରି ବଣରେ ଲୁଚୁଥିଲେ, ସବୁଆଇ ବି କେମିତି ସେମାନେ ସର୍ବହରା ହେଉଥିଲେ, କେମିତି ସେମାନଙ୍କ ଜୀବନର ଅନ୍ୟନାମ ଲୁହ, ଦୁଃଖ, ଯନ୍ତ୍ରଣା ଓ ଭୟ ହୋଇଯାଇଥିଲା ଏମାନଙ୍କ ମଣ୍ଡୁଆସୀ ଆକ୍ରମଣରେ ତାହାର ସ୍ୱରୂପ ଯେ କେତେ ଭୟଙ୍କର ଥିଲା ସେବେଳବେଳକୁ ଦେଖି ଶିହେରିଯାଉଛୁ ।

ଏମାନେ ମୁଣ୍ଡଝାଳ ତୁଣ୍ଡରେ ମାରି ବଣ ପାହାଡ଼ରେ ଯେଉଁ ଜୀବନ ବଞ୍ଚାଉଥିଲେ ଯାହା ବି ଚାଷକରୁଥିଲେ ତାହା ସେମାନଙ୍କ ଗୁଜରାଣ ମେଣ୍ଟାଇ ପାରୁନଥିଲା, ଏଣୁ ଅଭାବ ପୂରଣ ପାଇଁ ବାଧ୍ୟହୋଇ ମହାଜନ, ସାହୁକାରର ଦ୍ୱାରସ୍ଥ ହେବାକୁ ପଡ଼ୁଥିଲା । ପୁଅ ଝିଅର ବାହା ହେଉ କି ବାପାମାର ଦଶା କାମ ହେଉ ପଇସା ଧାରକରି ସୁଧ ସୁଝି-ପାରୁନଥିଲେ, ଆଉ ମହାଜନ କି ସାହୁକାର ଘରେ ଧାର ବାବଦକୁ ଗୋତି ଖଟୁଥିଲେ ।

ଏହି ଗୋତିପ୍ରଥା କୋରାପୁଟ ଆଦିବାସୀମାନଙ୍କ ପାଇଁ ଅଭିଶାପ ହୋଇଯାଇଥିଲା । ସେହି ଏକ ସାହୁକାରଘରେ ସେ ପିଢ଼ିପୁରୁଷ ଅମଳରୁ ଗୋତି ଖଟୁଥିଲା, ଜମିରେ ଚାଷ କରୁଥିଲା, କାଠ ଚିରୁଥିଲା, ଲୁଗା କାଚୁଥିଲା, ବାଡ଼ିରେ କାମ କରୁଥିଲା ଆଉ ହାଡ଼ଭଙ୍ଗା ଖଟଣି ବାବଦକୁ ପାଉଥିଲା ଲଉରୁମ୍ବାଏ ମାଣ୍ଡିଆଯାଉ, ନୂଆଖିଆବେଳେ ସାତହାତର ଖଣ୍ଡେ ଲୁଗା, ଗାମୁଛାଟିଏ ଆଉ ଧାନ ଅମଳ ପରେ ପୁଟିଏ ଦିପୁଟି (ଏକ ପୁଟି କୋଡ଼ିଏ

ମାଣ, ଏକମାଣ : ଊନ କ.ଗ୍ରା. ଧାନ) ପୋଲଧାନ, ଦୁଇକୋଡ଼ି ଟଙ୍କା । ସୁଧ ବାବଦକୁ ଟଙ୍କଣି ମକୁରହେଉଥିଲା, ମୂଳ ସେମିତ ରହୁଥିଲା ।

ଆଦିବାସୀମାନେ ଯେଉଁସବୁ ଅତ୍ୟାଚାରର ସମ୍ମୁଖୀନ ହେଉଥିଲେ ବାହାରୁ ଆସିଥିବା ଅଣଆଦିବାସୀଙ୍କଦ୍ୱାରା, ଯେଉଁମାନେ କି ନିଜକୁ ରାଜାଙ୍କର ଲୋକ ବୋଲାଇ ଶୋଷଣ କରୁଥିଲେ ସେମାନଙ୍କ, ସେମାନଙ୍କ ମୋଟ ସଂଖ୍ୟା ଦୁଇଲକ୍ଷରୁ ଅଧିକ ନଥିଲା । ତଥାପି ଶାସନର ଭୟ, ଦଣ୍ଡଦେବାର ଅଧିକାର, ଜମି ଛଡ଼ାଇନେବା, ଗାଁରୁ ଖେଦି ନେବା ବାହାରକରଦେବା, ଜଙ୍ଗଲକାଠ ବ୍ୟବହାର କଲେ ସଜା କରାଇବାର ଧମକ ଦେବା, ଓମ୍ବଙ୍କ ହାତରେ ମାଡ଼ମରାଇବା, ରାଜାଙ୍କୁ ଖଜଣା ଦେଇନପାରଲେ ଓମ୍ବଙ୍କୁ ଦୁଆରେ ଠେଙ୍ଗା ଧରାଇ ବସାଇବା ଶୋଷଣର ଭିନ୍ନ ଭିନ୍ନ ଉପାୟମାନ ଖଞ୍ଜି ଦୃଷୀକୁଳକୁ ଉଚ୍ଛନ୍ନ କରାଇବା ଏମାନଙ୍କ କାମଥିଲା ।

ବନ୍ଧ ଖୋଳାଇବା, ରାସ୍ତା ତିଆରି କରାଇବା ପାଇଁ ଗାଁର ସମସ୍ତ ସକ୍ଷମ ଲୋକଙ୍କୁ ରାଜକର୍ମଚାରୀମାନେ ଡକାଇ ବେଠିଖଟାଉଥିଲେ । ନିଜ ଘରୁ ଖିଦିଆ (ଖାଇବା ଜିନିଷ) ନେଇ ଆଦିବାସୀ ପ୍ରଜାଙ୍କୁ ସନ୍ତୁଷ୍ଟଭାବେ ବିନାମୂଲ୍ୟରେ କାମକରୁଥିଲା । ସ୍ୱାଧୀନତା ପୂର୍ବରୁ ଯେତେ ରୋଡ଼ ରାସ୍ତା କୋରାପୁଟ ଜିଲ୍ଲାରେ ହୋଇଥିଲା ସବୁ ବେଠିଖଟାଇ କରାଯାଇଥିଲା । ତା'ଛଡ଼ା ସରକାରଙ୍କ ପୋଲିସ ବିଭାଗ, ରାଜସ୍ୱ ବିଭାଗ, ବଣ ବିଭାଗ କର୍ମଚାରୀଙ୍କ ଘରେ କାମ କରିବା ପାଇଁ ଭିନ୍ନ ଭିନ୍ନ ଗାଁମାନଙ୍କୁ ପାଳା ଖଞ୍ଜିଦେଇଥିଲେ । ଗାଁମାନଙ୍କରୁ ଜଣେ ଜଣେ ଏହି କର୍ମଚାରୀମାନଙ୍କ ଘରକୁ ଆସି ହାଟପାଳରୁ ହାଟପାଳି (୭ ଦିନ) ଯାଏ ନିଜ ହାତରୁ ଖାଇ ଘରପାଇଟି କରୁଥିଲେ । ଏହାକୁ ହାଟପାହାଳି କୁହାଯାଏ । ଏମାନଙ୍କୁ ପଶୁପରି ବ୍ୟବହାର କରାଯାଉଥିଲା ।

ସବୁଠାରୁ ବଡ଼ ଉପଦ୍ରବଥିଲା ଗଡ଼ମ୍ ପ୍ରଥା । ଏହା ଏମିତି ଏକ ପ୍ରଥା ଥିଲା ଯାହା ଆଦିବାସୀ ଜୀବନକୁ ଲହୁଲୁହାଣ କରିଦେଉଥିଲା । ଫସଲ ହେବାପୂର୍ବରୁ ସରକାରୀ କର୍ମଚାରୀମାନେ ବା ନାଏକ, ଗାଉଣ୍ଡିଆ, ଗଣ୍ଡାଚାଲଣ, ଚୌକିଦାର ମାର୍ଫତରେ ଅଳ୍ପ ପଇସା ଦେଇ ଧାନ, ମୁଗ, ବିରି, କୋଳଥ, ଘିଅ, ଝୁଡ଼ୁଙ୍ଗ ଆଦି ଅସୁଲ କରିନେଉ-ଥିଲେ । ଅଭାବ ଆଦିବାସୀ ଟଙ୍କାଏ ଦୁଇଟଙ୍କା ପାଇଁ ଶହ ଶହ ଟଙ୍କାର ଫସଲ ବାଧ୍ୟହୋଇ ସେମାନଙ୍କ ହାତରେ ଟେକିଦେଉଥିଲା ।

ହଳପାଲୁ (ଖଜଣା), ଲଙ୍ଗଳପାଲୁ, ବଣପାଲୁ ଦେଇ ଦେଇ ସେ ସର୍ବସ୍ୱାନ୍ତ ହେଉ-ଥିଲା । ସବୁଠୁ ବେଶୀ ଦାଉସାଧୁଥିଲା 'ସପ୍ଲାଇ' ନାମକ ଏକ ଘୃଣିତ ପ୍ରଥା । କୌଣସି ଗାଁକୁ ଅଧିକାରୀ ଆସି ରହିଲେ ତାଙ୍କ ଖାଇବା ପିଇବାର ବ୍ୟବସ୍ଥା ଗାଁଲୋକଙ୍କଠାରୁ ଅସୁଲକରି କରାଯାଉଥିଲା । ଭଲଘିଅ, ସରୁ ଅରୁଆଚାଉଳ, କୁକୁଡ଼ା, ମେଣ୍ଢା, ଛେଳି ସବୁ ଗାଁଲୋକଙ୍କଠାରୁ ବାଧ୍ୟତାପୂର୍ବକ ଅସୁଲ କରୁଥିଲେ । ପ୍ରାୟ ଗାଁରେ ଥିବା ରାଜାଙ୍କଦ୍ୱାରା ନିଯୁକ୍ତ ପାଇଥିବା ନାଏକ, ଗଉଣ୍ଡିଆମାନେ ଏହି କାମ କରୁଥିଲେ । ଏହି

ନାୟକମାନଙ୍କ ହାତରେ ରଖି ସରକାରୀ କର୍ମଚାରୀମାନେ ନିଜ ସ୍ୱାର୍ଥ ପୂରଣ କରୁଥିଲେ । ଆଉ ଆଦିବାସୀ ଲୁହ ନିକାଳି ରକ୍ତ କାନ୍ଦୁଥିଲେ ।

ଏହି ଗରଣ୍ଟିଆମାନେ, ଗାଁ ମୁଖିଆମାନେ ରାଜା ଦେଇଥିବା ଜମିର ଭୂମି ଭୋଗ କରିବା ସଙ୍ଗେ ସଙ୍ଗେ ଯେଉଁମାନେ ଖଜଣା ଦେଇପାରୁନଥିଲେ ସେମାନଙ୍କ ହାତରୁ ଛଡ଼ାଇ ଅନ୍ୟମାନଙ୍କୁ ଦେଇଦେଉଥିଲେ । ଏମିତିକି କୌଣସି ବ୍ୟକ୍ତି ଯଦି ଆଣ୍ଟରେ ପଦେ କଥା କହିଦେଉଥିଲେ ତାଙ୍କୁ ଗାଁର ନିଆଁ ପାଣି ବନ୍ଦକରିଦେଉଥିଲେ ଓ ଗାଁରୁ ବାହାରକରିଦେଉଥିଲେ ।

ଏମିତି ବହୁ ଅତ୍ୟାଚାରରେ ପୀଡ଼ିତ, ନିଷ୍ପେଷିତ, ଶୋଷିତ ଆଦିବାସୀମାନେ ଯେତେବେଳେ କଂଗ୍ରେସର ବାର୍ତ୍ତା, ସ୍ୱରାଜ୍ୟର କଥା ଶୁଣିଲେ, ପାନୁ ଗଡ଼ମ୍, ସପ୍ଲାଇ ଉଠିଯିବ ବୋଲି ଶୁଣିଲେ କେମିତି ଏକ ନୂତନ ସ୍ୱପ୍ନ ଓ ସମ୍ଭାବନା ସେମାନଙ୍କ ମନରେ ଜନ୍ମନେଲା । ଏହି ସ୍ୱପ୍ନକୁ ମାଲକାନଗିରି ଅଞ୍ଚଳରେ ପ୍ରକୃତ ରୂପ ଦେଇଥିଲେ ଭୂମିଆଗୋଡ଼ ଲକ୍ଷ୍ମଣ ନାୟକ ଆଉ ଶୁଣାଇଥିଲେ ଦଳିତ ଆଦିବାସୀଙ୍କୁ ବନ୍ଦେମାତରଂ ଓ ଅହିଂସା ଆନ୍ଦୋଳନର କଥା । ନୂଆଚେତନାର ରାସ୍ତାରେ ଆଗେଇ ଚାଲିବାର ବ୍ରତନେଇ ଲକ୍ଷ୍ମଣ ନାୟକ ହେଲେ ସେ ଅଞ୍ଚଳର ନାୟକ, ମୁଖିଆ, ପଥପ୍ରଦର୍ଶକ ।

## ୩ । ଲକ୍ଷ୍ମଣ ନାୟକଙ୍କ ପିଲାଦିନ ଓ ମାଲକାନଗିରି ଅଞ୍ଚଳ

୧୯୩୬ ମସିହାରେ କୋରାପୁଟ ଜିଲ୍ଲା ହେଲା । ଏହି ଜିଲ୍ଲା କୋରାପୁଟ, ଜୟପୁର, ନବରଙ୍ଗପୁର, ମାଲକାନଗିରି, ପଠାଙ୍ଗୀ, ରାୟଗଡ଼ା, ଗୁଣୁପୁର ଓ ବିଷମକଟକ ଅଞ୍ଚଳକୁ ନେଇ ଗଠିତହେଲା । ଏହି ଜିଲ୍ଲାର ସଦରମହକୁମା କୋରାପୁଟ ସହରରେ ରହିଲା । କୋରାପୁଟ ପ୍ରକୃତିର କୋଳରେ ନୈସର୍ଗିକ ଶୋଭାକୁ ନେଇ ଇଂରେଜମାନଙ୍କ ମନଲାଖି ଶୈଳନିବାସରେ ପରିଣତ ହୋଇଥିଲା ।

ଜିଲ୍ଲାର ବିଭିନ୍ନ ଅଞ୍ଚଳରେ ଶାସନ ଚଳାଇବା ପାଇଁ ଓ ଆଇନର ରକ୍ଷାକରିବା ପାଇଁ, ଶାନ୍ତିଶୃଙ୍ଖଳା ରକ୍ଷାକରିବା ପାଇଁ ପୋଲିସଥାନାମାନ ବସାଗଲା । କୋରାପୁଟ ଜିଲ୍ଲାର ଆଇନ ଶୃଙ୍ଖଳା ପାଇଁ ଜଣେ ପୋଲିସ ସୁପରିନ୍‌ଟେଣ୍ଡେଣ୍ଟ, ଦୁଇଜଣ ସହକାରୀ ସୁପରିନ୍‌ଟେଣ୍ଡେଣ୍ଟ, ଜଣେ ସର୍ଜେଣ୍ଟ ମେଜର, ଦୁଇଜଣ ସର୍ଜେଣ୍ଟ, ନଅଜଣ ଥାନା ଇନସ୍‌ପେକ୍ଟର, ଅଣଚାଳିଶଜଣ ସହକାରୀ ଇନ୍‌ସପେକ୍ଟର, ଛପନଜଣ ହେଡ୍ କନେଷ୍ଟବଲ ଓ ପାଞ୍ଚଶହ ପନ୍ଦର ଜଣ କନେଷ୍ଟବଲ ରହିଲେ । ଏହି ପୋଲିସବାହିନୀର ଅତ୍ୟାଚାର ଅକଥନୀୟ ହେଲା । ଶୃଙ୍ଖଳା ନାମରେ, ଶାସନ ନାମରେ କୋରାପୁଟର ଆଦିବାସୀଙ୍କୁ ଦମନକରିବା ଏବଂ ଶୋଷଣକରିବା ଏମାନଙ୍କ ମୁଖ୍ୟ କାର୍ଯ୍ୟ ହେଲା ।

୧୯୪୧ ମସିହାବେଳକୁ ସମଗ୍ର କୋରାପୁଟ ଜିଲ୍ଲାରେ ୩୧ ଗୋଟି ପୋଲିସ ଥାନା ଓ ୧୧ଟି ଫାଣ୍ଡି ବସାଗଲା ।

ସାରା ଜିଲ୍ଲାରେ ରାଜାଙ୍କ କର୍ମଚାରୀମାନେ ନାୟକ, ଗାଉଣ୍ଡିଆ, ମୁଖିଆମାନଙ୍କ ସାହାଯ୍ୟରେ ରାଜସ୍ୱ (ଖଜଣା) ଆଦାୟ କରୁଥିଲେ ଏବଂ ଇଂରେଜ ସରକାର ପୋଲିସ-ମାନଙ୍କ ଦ୍ୱାରା ଶାସନ ଓ ଶୃଙ୍ଖଳା ଦେଖୁଥିଲେ । ଏହିପରି ଦୁଇ ଶାସନର ଅତ୍ୟାଚାର ଭିତରେ କୋରାପୁଟ ଜିଲ୍ଲାର ଆଦିବାସୀ ନା ମରିପାରୁଥିଲେ ନା ଜୀଇଁପାରୁଥିଲେ; ଖାଲି ଅସହାୟ ହୋଇ ଗୁହାରି କରୁଥିଲେ, ଆଉ ସରକାର ଲୋକ ପାଖରେ ସମର୍ପି ହୋଇ ଏତିକି କହୁଥିଲେ, "ମୋର ଦୋଷ ହେଲ ମାହାପ୍ରୁ, କୋପ୍ ନକରବେ, ଚତମ୍ ମାହାପ୍ରୁ, ମୁଇଁ ତୋର ପାଦର ପାଶ୍ରେଇବାବୁ, ନାମାରନ ।" (ମୋ ଦୋଷହେଲ ବାବୁ, ରାଗ ନାହିଁ, ତୁ ଯାହା କହୁଛୁ ସତ କହୁଛୁ, ମୁଁ ତୋ ପାଦର ପାଶ୍ୱୋଇ ପଶ, ମାରେନା ବାବୁ !)

ଏମିତି ଉପଦ୍ରବରୁ ମାଲକାନଗିରି ଅଞ୍ଚଳର ଆଦିବାସୀ ମଧ୍ୟ ବାଦଯାଇନଥିଲେ । ଏମାନେ କି ଶୁଣ୍ଡି, ସାହୁକାର, ମହାଜନଙ୍କ ଦାଉରେ ଉଚ୍ଛନ୍ନ ହେଉଥିଲେ । ଗୋତି ଖଟୁଥିଲେ, ବେଠି କରୁଥିଲେ, ଗଡ଼ମରେ ବ୍ୟତିବ୍ୟସ୍ତ ହୋଇ ଜାହି ଜାହି ଡାକ ଛାଡୁଥିଲେ । ଲଙ୍ଗଳପାଳୁ, ବଳଦପାଳୁ, ଦଶରା ମାମୁଲି, ସଫ୍ଲାଇ, ହାଟପାହାଣ, ବେଡ଼ାଛଡ଼ା, ଗାଁ ଖେଦାକୁ ଭୋଗୁଥିଲେ । ସବୁଠୁ ବେଶୀ ଉଚ୍ଛନ୍ନ ହେଉଥିଲେ ଶୁଣ୍ଡି ସାହୁକାର ଅତ୍ୟାଚାରରେ । ମଦପିଇ ସର୍ବସ୍ୱାନ୍ତ ହେଉଥିଲେ । ଶାସନ ବୁଝୁନଥିଲା ସେମାନଙ୍କ ସ୍ୱାସ୍ଥ୍ୟର କଥା । ଶିକ୍ଷାର ବ୍ୟବସ୍ଥା ନ କହିଲେ ଭଲ । ମଣିଷ ବଞ୍ଚୁଥିଲା ପଶୁପରି ବଣଜଙ୍ଗଲରେ । ସମସ୍ତଙ୍କ ଶୋଷଣରେ ନିଜର ଅଧିକାରକୁ ହରାଇ ସେ ମରଣ ନେଉଁ-ଥିଲା ଯେମିତି । ଏଣୁ ସାଧାରଣ ଫରେଷ୍ଟ ଗାର୍ଡ଼ଟିଏକୁ ଦେଖିଲେ ଗାଁସାରା ପଦାହୋଇ ଯାଉଥିଲା ଆଉ ପୋଲିସ ଆସିଲେ କୁକୁଡ଼ା, ଛେଳି, ସରୁଚାଉଳ, ଭଲଘିଅ, ବରି, ମୁଗ, କାନ୍ଦୁଲ, ଆଉ ଦରକାର ପଡ଼ିଲେ ବୋହୂ, ଝିଅ ସବୁ ଝିଙ୍ଗିନେଉଥିଲେ; ନଦେଲେ ହାତରେ ଗୋଡ଼ରେ ବେଡ଼ିପକାଇ, ଅଣ୍ଟାରେ ଦଉଡ଼ିବାନ୍ଧି ନାନା ଦଫାରେ ଥାନା ହାଜତରେ ମାଡ଼ରେ ପିଟିଫଟାଇ ଯେଉଁ ଯନ୍ତ୍ରଣା ଦେଉଥିଲେ ତାହା ଅଫିକାରୁ ଯାଇ କ୍ରୀତଦାସ ହୋଇଥିବା ଅଶ୍ୱେତାଙ୍କ ଭାଗ୍ୟରେ ବି ଘଟୁନଥିଲା ।

କୋରାପୁଟ ଜିଲ୍ଲାର ଏକ ସବଡ଼ିଭିଜନ ମାଲକାନଗିରି । ଏହାର ଆୟତନ ଦୁଇ-ହଜାର ବର୍ଗମାଇଲ । ଓଡ଼ିଶା ମାନଚିତ୍ରକୁ ଦେଖିଲେ ତାହାର ଦକ୍ଷିଣ ଶେଷ ଅଂଶରେ ଯେଉଁଠି ଶବରୀ ଓ ସିଲେରୁ ନଦୀ ମିଶିଯାଇଛନ୍ତି ସେହି ସଙ୍ଗମ ସ୍ଥଳରେ ଯେଉଁ ଗାଁ ତାର ନାମ ମୋଟୁ । ମୋଟୁ ଡେଇଁଲେ ପଡ଼ିବ ପୂର୍ବ ଆଡ଼କୁ ଅନ୍ଧ୍ରପ୍ରଦେଶ । ପୂର୍ବ ଦିଗରୁ ବହିଆସୁଛି ମାଛକୁଣ୍ଡ ନଦୀ (ପୁରାଣ ବର୍ଣ୍ଣିତ ମତ୍ସ୍ୟକୁଣ୍ଡ, ଏକ ତୀର୍ଥସ୍ଥାନ) ପାହାଡ଼ତଳେ ତଳେ ଡେଇଁ । ଉତ୍ତରରୁ ଘୋର ଗର୍ଜନ କରି ଧାଇଁଆସିଛି ସିଲେରୁ ନଦୀ ଯାହାକୁ ୧୦୦

ଲେକେ ନାଆଁ ଦେଇଛନ୍ତି କୋଲାବ ବୋଲି । ଏହି ଦୁଇନଦୀ ମିଶିବା ସ୍ଥାନରୁ ଆରମ୍ଭ ହୋଇ ମାଲକାନଗିରି ସବ୍‌ଡିଭିଜନ ବ୍ୟାପିଆସିଛି ବୈପାରୀଗୁଡ଼ାଯାଏଁ ।

ଦୁଇନଦୀର ତ୍ରିକୋଣଭୂମିରେ ଅବସ୍ଥିତ ମାଲକାନଗିରି ସବ୍‌ଡିଭିଜନ । ସିଲେରୁ ନଦୀର ଦକ୍ଷିଣରେ ଆନ୍ଧ୍ରପ୍ରଦେଶର ମାଡ଼ଗୁଲି ପର୍ବତମାଳା ଲମ୍ବିଯାଇଛି । ଉତ୍ତରରେ ବଣ୍ଡାଘାଟ ପର୍ବତମାଳା ନଦୀ କଡ଼େ କଡ଼େ ଠିଆହୋଇଛି କାନ୍ଥପରି । କୋଲାବ (ସିଲେରୁ ନଦୀ) ସେପଟେ ମଧ୍ୟପ୍ରଦେଶ, ଏପଟେ ଓଡ଼ିଶା ମଝିରେ ପର୍ବତଶ୍ରେଣୀ । ଏହି ଦୁଇ ନଦୀରେ ଦୁଇଟି ଭୟଙ୍କର ଜଳପ୍ରପାତ—ମାଛକୁଣ୍ଡ ନଦୀ ( ଶବରୀ )ର ଡୁଡୁମା ଓ ସିଲେରୁ (କୋଲାବ) ନଦୀର ବାଗ୍ରା ଜଳପ୍ରପାତ—ଯେତିକି ସୁନ୍ଦର ସେତିକି ଭୟପ୍ରଦ ।

ଦୁଇ ନଦୀର ମିଳନସ୍ଥଳଠାରୁ କୋରାପୁଟ ଜିଲ୍ଲାର ପ୍ରଧାନ ସହର ଜୟପୁର, ଯାହାକୁ ସୂର୍ଯ୍ୟବଂଶୀ ରାଜାମାନେ ନନ୍ଦପୁରରୁ ଆସି ବସାଇଥିଲେ, ୧୦୦ ମାଇଲ ଦୂର । ଏହି ଜୟପୁର ସହରଠାରୁ ବୈପାରୀଗୁଡ଼ା ୧୪ ମାଇଲ, ଗୋବିନ୍ଦପାଲି ୩୧ ମାଇଲ, ମାଥିଲି ୪୦ ମାଇଲ ଓ ମାଲକାନଗିରି ୬୦ ମାଇଲରେ ଅବସ୍ଥିତ ।

୧୯୩୭ ବେଳକୁ ଜୟପୁର ମାଲକାନଗିରି ରାସ୍ତାକୁ ଛାଡ଼ିଦେଲେ ଆଉ ରାସ୍ତା ନଥିଲା । ଦୁଇହଜାର ବର୍ଗମାଇଲବ୍ୟାପି ଏହି ସବ୍‌ଡିଭିଜନର ୫୦—୬୦ଟି ଗାଁକୁ ଯିବା ପାଇଁ ଯାହା କିଛିଏ ରାସ୍ତାଘାଟର ସୁବିଧା ଥିଲା, ବାକି ୨୦୦୦ ଗାଁ ଦୁର୍ଗମ । ଖାଲି ବଣ । ବଣଜନ୍ତୁ, ପାହାଡ଼ପର୍ବତ ଓ ନଈନାଳକୁ ପାରି ହେବା ଭାରି କଷ୍ଟସାଧ୍ୟ ଥିଲା । ଯେମିତି ଜଙ୍ଗଲର ସମୁଦ୍ର । ଗଛମାନ ଆକାଶକୁ ଛୁଇଁବ ଛୁଇଁବ ହେଉଛି । ସେଇଁଆଡ଼େ ଦେଖିଲେ ବାଉଁଶଗଛ । ଭିତରେ ବଣୁଆନାଳ, ହିଂସ୍ର, ସ୍ରୋତମସ୍ତ ।

କୁହାଯାଏ ବହୁ ପୁରାକାଳରେ ଏହି ରାଜ୍ୟ ଦଣ୍ଡକ ରାଜାଙ୍କର ଅଧୀନରେ ଥିଲା । ଏହାକୁ ଦଣ୍ଡକାରଣ୍ୟ ବୋଲି କୁହାଯାଉଥିଲା । ମହାପ୍ରଭୁ ରାମଚନ୍ଦ୍ର ଏହି ବଣରେ ସୀତାଦେବୀ ଓ ଲକ୍ଷ୍ମଣଙ୍କ ସହିତ ଅନେକକାଳ କଟାଇ ଏ ମାଟିକୁ ପୂତପବିତ୍ର ଧନ୍ୟ କରିଥିଲେ । ଏ ଅଞ୍ଚଳର ପର୍ବତମାଳା ମାଲ୍ୟବନ୍ତଗିରି ନାମରେ ପ୍ରସିଦ୍ଧ ଥିଲା । କାଳକ୍ରମେ ଲେକମୁଖରେ ପାଲଟିଗଲା ମାଲକାନଗିରି । ଶିଳାଗହ୍ୱରରୁ ବାହାରିଥିବା ପୁରାଣପ୍ରସିଦ୍ଧ ଶିଳାଦ୍ରୀ ନଦୀ ପାଲଟିଗଲା ସିଲେରୁ । ରାମାୟଣର ରାମଗିରି ଏଇଠି ଅଛି । ସୀତାଙ୍କ ଗାଧୋଇଥିବା ନଦୀ ତମସା ଏବେ ବି ବହିଚାଲିଛି ଏଇଠି । ମର୍ଯ୍ୟାଦା ପୁରୁଷୋତ୍ତମ ରାମଚନ୍ଦ୍ରଙ୍କ ଲୀଳାଭୂଇଁ ଏହି ମାଲକାନଗିରି, ଏଣୁ ଏଠା ଆଦିବାସୀ ପୁରାଣ ଯୁଗରୁ ଏ ଭୂମିର ସନ୍ତାନ ବୋଲି ଗର୍ବ କରିଥାନ୍ତି ।

୧୯୩୭ ମସିହା ବେଳକୁ ମାଲକାନଗିରିରେ କେବଳ ଆଦିବାସୀ ହିଁ ବାସ କରୁଥିଲେ । ବଣ ଭିତରେ ଦଶ ବାର ମାଇଲ ଚାଲିକରି ଗଲେ ପଡ଼ୁଥିଲା ଗୋଟିଏ ଦୁଇଟି ଗାଁ । ମୋଟୁଠାରୁ ମାଲକାନଗିରିଯାଏଁ କୋୟାମାନଙ୍କର ରାଜ୍ୟ । ମାଲକାନଗିରିଠାରୁ ବୈପାରୀଗୁଡ଼ାଯାଏଁ ବଣ୍ଡାମାନଙ୍କର ବସତି । ତା'ଛଡ଼ା ଆଉ ଆଦିବାସୀଗୋଷ୍ଠୀ ଯେମିତିକି ଭୂମିଆ, ଗାଦବା, ପରଜା, ଆଦି ।

ଜୟପୁରଠାରୁ ୧୪ ମାଇଲ ଦୂରରେ ବୈପାରୀଗୁଡ଼ା । ବହୁକାଳରୁ ମଧ୍ୟପ୍ରଦେଶରୁ ବୈପାରୀ ଯେଉଁମାନେ ଗାଁ ଗାଁ ବୁଲି ବେପାର କରନ୍ତି ବହୁ ସଂଖ୍ୟାରେ ଏଠି ବାସ କରିଥିବାରୁ ଏହାର ନାମ ବୈପାରୀଗୁଡ଼ା (ବଇପାରୀମାନଙ୍କ ସାନ ଗାଁ) । ଏମାନେ କାଚ, ସିନ୍ଦୂର, ଲବଣ, ଆଉ ଆଉ ଜିନିଷମାନ ବଦଳେ ଧାନ, ଚାଉଳ, ମୁଗ, ବିରି ସଂଗ୍ରହ କରୁଥିଲେ । ପିତଳ ଝଅଁର, ରଙ୍ଗ ଝଅଁର, ରୂପା ଝଅଁର ଖଡ଼ୁ, ବାହୁଟି, କାନଫୁଲ, ନାକଫୁଲ, ମାଳି, ଗୁଞ୍ଜମାଳି, କାଚମାଳି ବିକୁଥିଲେ ଆଦିବାସୀମାନଙ୍କୁ ।

ଏହି ବୈପାରୀଗୁଡ଼ା ଥାନା ଅନ୍ତର୍ଭୁକ୍ତ କୋଲାବ ନଦୀର କୂଳରେ ଏକ କ୍ଷୁଦ୍ର ଗ୍ରାମ —ନାମ ତେନ୍ତୁଲିଗୁମ୍ମା । ଜୟପୁରଠାରୁ ୩୧ ମାଇଲ ଦୂରରେ ଥିବା ମାଚ୍ଛଳଠାରୁ ଆଠ ମାଇଲ ଦୂର ପାଦରେ ଯାଇ କୋଲାବ ନଦୀ ପାରହେବାକୁ ପଡ଼େ ଏବଂ ନଦୀ ପାର ହୋଇ ବାଗ, ଉଦୟଗିରି, ମାନଗୁମ୍ମା ଗାଁ ଡେଇଁ ବାରମାଇଲ ଗଲେ ଏଇ ଗାଁରେ ପହଞ୍ଚିହୁଏ । ଆଉ ଗୋଟିଏ ରାସ୍ତା ଦେଇଗଲେ ବି ପଡ଼େ ତେନ୍ତୁଲିଗୁମ୍ମା । ବୈପାରୀଗୁଡ଼ାରୁ ୧୪ ମାଇଲ ପଶ୍ଚିମ ଦିଗରେ ଗଲେ ପଡ଼େ ରାମଗିରି, ରାମଗିରି ଡେଇଁଲେ ପ୍ରସିଦ୍ଧ ଶୈବପୀଠ ଗୁପ୍ତେଶ୍ୱର । କୋଲାବ ନଦୀ କୂଳରେ ପ୍ରକୃତିଦ୍ୱାରା ନିର୍ମିତ ଏଇ ଗୁପ୍ତଲିଙ୍ଗ । ଏ ଦେବତା ପର୍ବତ ଗୁମ୍ଫାବାସୀ । ବଡ଼ ପ୍ରତ୍ୟକ୍ଷ । ଜୟପୁର ରାଜା ଏହାଙ୍କ ପୂଜାପାଇଁ ପୂଜାରୀ ଖର୍ଚ୍ଚ ଦେଇଥିଲେ । ଏହି ରାମଗିରିଠୁ ଆଠମାଇଲ ପଶ୍ଚିମକୁ ମୁହାଁଇ ଚାଲିଲେ ପଡ଼ିବ ତାରାପର୍ବତ । ପର୍ବତକୁ ଲାଗି କୋଲାବ ନଦୀ । ନଦୀ ପାରହେଲେ ଦିଶିବ ତେନ୍ତୁଲିଗୁମ୍ମା । ଏହି ତେନ୍ତୁଲିଗୁମ୍ମା ଗାଁରେ ୧୮୯୯ ମସିହା ନଭେମ୍ବର ମାସ ୨୨ ତାରିଖରେ ଜନ୍ମଗ୍ରହଣ କରିଥିଲେ ଲକ୍ଷ୍ମଣ ଭୂମିଆ ।

ତାଙ୍କ ବାପାଙ୍କ ନାମ ପଦଲାମ ଭୂମିଆ । ଜାତିରେ ଭୂମିଆ । କୃଷି ଏମାନଙ୍କର ମୁଖ୍ୟ ଜୀବିକା । ଭୂମିଆମାନେ ମଧ୍ୟପ୍ରଦେଶର ବାଇଗା ଆଦିବାସୀ ଗୋଷ୍ଠୀର ଏକ ସମ୍ପ୍ରଦାୟ । ବୈପାରୀଗୁଡ଼ା ଓ ନିକଟବର୍ତ୍ତୀ ଅଞ୍ଚଳ ତଥା ଜୟପୁର ଅଞ୍ଚଳର ବିଭିନ୍ନ ଗ୍ରାମରେ ବସବାସ କରୁଥିବା ଭୂମିଆମାନଙ୍କ ପୂର୍ବପୁରୁଷ ମଧ୍ୟପ୍ରଦେଶରୁ ଆସି ଏଠି ବସତିସ୍ଥାପନ କରିଥିଲେ, ଗାଁଗଣ୍ଡା ବସାଇଥିଲେ । କ୍ଷେତ୍ରମ୍ମ ବଢ଼ାଇଥିଲେ । ପଦଲାମ ଭୂମିଆ ନିଜ ଗୁଣ ଯୋଗୁଁ ଗାଁଲୋକଙ୍କର ବେଶୀ ପ୍ରିୟ ଥିଲେ । ଏଣୁ ତେନ୍ତୁଲିଗୁମ୍ମା, ବେଜୁଣିଗୁଡ଼ା, ଲେକଗୁଡ଼ା ଓ ଅଁଅଲାଗୁଡ଼ା ଏହି ଚାରି ଗାଁର ଖଜଣା ଆଦାୟ କରିବାପାଇଁ ଜୟପୁର ରାଜା ତୃତୀୟ ବିକ୍ରମଦେଓ ତାଙ୍କୁ ନାୟକପଦରେ ମନୋନୀତ କରିଥିଲେ । ଏ ରାଜା ଜୟପୁର ଗାଦିରେ ୧୮୮୯ ମସିହାରୁ ୧୯୨୦ ଯାଏ ବସି ଶାସନ କରିଥିଲେ ।

କାଳକ୍ରମେ ପଦଲାମ ଭୂମିଆ ନିଜ ପଦବୀ ଅନୁସାରେ ନାୟକ ବୋଲାଇଲେ । ତେଣୁ ଲକ୍ଷ୍ମଣ ଭୂମିଆ ତାଙ୍କ ବାପାଙ୍କ ଅନ୍ତେ ନାୟକ ପଦ ପାଇବାରୁ ସେ ହେଲେ ଲକ୍ଷ୍ମଣ ନାୟକ ।

ପଦଲମ ନାୟକ ବଡ଼ ବପୁବନ୍ତ । ଦେହରେ ବଳ ଖୁନ୍ଦହୋଇରହିଥିଲା । ଯେମିତ ନଜ଼ର, ସେମିତ କର୍ମଠ । ତାଙ୍କର ତନ ପୁଅ । ବଡ଼ ପୁଅ ସନଆ, ମଝିଆଁ ପୁଅ ଲକ୍ଷ୍ମଣ ଓ ସାନପୁଅ ଧନ । ପଦଲମଙ୍କ ଦୁଇ ଭାଇ । ସବୁ କୁଟୁମ୍ବ ଗୋଟେ ଖୁଆଡ଼ରେ ରହନ୍ତ । ଗୋଟେ ଖଦାରେ ଖାଅନ୍ତ । ମଝିରେ ଅଗଣା, ଚାରପଟେ ଆଠ ବଖରା ଘର । ମାଟି କାନ୍ଥ, ଛଣ ଛପର । ଅଗଣାର ଟାଳି ପଟରେ ମଣ୍ଡପଟିଏ । ସେଠି ବସି ପଦଲମ ଗାଁ ଲୋକଙ୍କ ସହ କଥାଭାଷା ହୁଅନ୍ତ । ମଣ୍ଡପ ଆଗରୁ ଲମ୍ବିଯାଇଛ ମାଟିରାସ୍ତା ଗାଁମୁଣ୍ଡ ଯାଏ । ରାସ୍ତା ଦୁଇକଡ଼ରେ ଧାଡ଼ି ଧାଡ଼ି ଘର । ମଣ୍ଡପରେ ବସିଲେ ପୂରା ଗାଁଦାଣ୍ଡ ଦଶେ । ଅଗଣା ସେପଟେ ଗୁହାଳରେ ଗାଈ, ଗୋରୁ, ଛେଳି, ମେଣ୍ଢା ଭର୍ତ୍ତି । ବେଡ଼ା (ଗୃହଜମି) ପ୍ରାୟ ଶହେ ଏକର ଥିଲା ପଦଲମ ନାୟକଙ୍କର । ପଦଲମ ନାୟକଙ୍କ ପରିବାର ଏକ ସପନ୍ନ ପରିବାର ।

ଆଦିବାସୀ ଯେତେ ଧନୀ ହେଲେ ମଧ୍ୟ କର୍ମରେ ଅବହେଳା କରେନାହିଁ । ସେ ଜମିକୁ ଯାଏ, ହଳ କରେ, ଗାନ୍ଥ କଟେ, ଘର କାମ, ଗୁହାଳ କାମ କରେ । ଶଗଡ଼ ନେଇ ବଣକୁ ଯାଏ, କାଠ ଆଣେ । ବଣ ସଫାକରି ନୂଆ ଜମି ଯୋଗାଡ଼େ । ସଞ୍ଜହେଲେ କାଠମୁଣ୍ଡାରେ ନିଆଁ ଲଗାଇ (ଅଂଡରା) ହାତ ପୁଅାଏ । ଗୀତ ଗାଏ । ଜାଣିଥିଲେ ବଂଶୀ ବଜାଏ । ପୁଣ୍ୟପର୍ବ, ଭୋଜିଭାତରେ ମଦପିଏ, ସଲପ ପିଏ, ମାତାଲ ହୁଏ । ଖରା ବର୍ଷା, ଶୀତରେ ମାଟି ସଙ୍ଗେ ମାଟି, ପାଣି ସଙ୍ଗେ ପାଣି ହୋଇ ସେ ଖଟେ । ଶ୍ରମ ହିଁ ତା ପାଇଁ ଜୀବନ ହୁଏ । ଜନ୍ମରୁ ମୃତ୍ୟୁଯାଏ ଭୂମି ସହ ଏମାନେ ଜଡ଼ିତରହୁଥିବାରୁ ବୋଧହୁଏ ଏମାନେ ଭୂମିଆ ବୋଲଡାକୁଥିଲେ । ଅନ୍ୟାନ୍ୟ ଆଦିବାସୀ ଗୋଷ୍ଠୀ ତୁଳନାରେ ଏମାନେ ଅପେକ୍ଷାକୃତ ଭଲ ଓଡ଼ିଆ କହିପାରୁଥିଲେ ।

ପଦଲମ ନାୟକ ଥିଲେ ମୁସ୍ତାଦାର । ସେ ନିଜ କାମ ନିଜ ହାତରେ କରୁଥିଲେ । ବାପାଙ୍କର ପ୍ରଭାବ ଲକ୍ଷ୍ମଣଙ୍କ ଉପରେ ପିଲାଦନରୁ ପଡ଼ିଥିଲା । ସବୁ ଆଦିବାସୀ ପିଲା ପରି ଲକ୍ଷ୍ମଣ ମଧ୍ୟ ଲେଙ୍ଗୁଟି ପିନ୍ଧୁଥିଲେ । ଗାଈ ଚରାଇବାକୁ ଯାଉଥିଲେ । ବର୍ଷାରେ ଭିଜି ହଳକରୁଥିଲେ । ବଣକୁ ଯାଇ କାଠ ହାଣୁଥିଲେ । ସେ ଥିଲେ ଗାଁର ଅନ୍ୟ ପିଲାମାନଙ୍କ ପରି ସାଧାରଣ ।

ଟେଣ୍ଟୁଲିଗୁମ୍ମା ଗାଁରେ ଷାଠିଏ ଘର । ଗାଁରେ ପରଜା, ଡମ୍ବ, କୁଟିଆ, କମାର ପାଇକ ଆଦି ବହୁ ଜାତର ଲୋକ ରହୁଥଲେ । ଲକ୍ଷ୍ମଣ ସମସ୍ତଙ୍କର ସ୍ନେହର ପାତ୍ର । କୌଣସି ଜାତପାତ ତାଙ୍କୁ ଅଟକାଉ ନଥିଲା । ସେ ସମସ୍ତଙ୍କ ଘରକୁ ଯାଉଥିଲେ । ସେମାନଙ୍କଠୁ ଅନେକ କଥା ଶିଖୁଥିଲେ । ବଣ ଭିତରେ ଥିବାରୁ ଗାଁର ସମସ୍ତେ ଶିକାରୀ । ଘରେ ଘରେ ଧନୁଶର । ଧନୁଶର ଆଦିବାସୀର ଜୀବନ । ବଞ୍ଚିବାର ସାଧନ । ବାପା, ଗାଁର ବଡ଼ବୁଢ଼ାଙ୍କଠୁ ଶିଖି ଲକ୍ଷ୍ମଣ ଶିକାର କଲେ । କିନ୍ତୁ ଶିକାର କରିବା ତାଙ୍କର ପ୍ରିୟ ଥିଲା ।

ସେତେବେଳେ ପାଠ କଣ କେହି ଜାଣିନଥିଲେ । ସ୍କୁଲ କଣ ସେ ଅଞ୍ଚଳର କେହି ଦେଖିନଥିଲେ । ଏଣୁ ପିଲାଦିନେ ଲକ୍ଷ୍ମଣ ପାଠ ପଢ଼ିବାର କୌଣସି ସୁଯୋଗ ପାଇ-ପାରିଲେ ନାହିଁ । ତାଙ୍କ ବାପାହିଁ ତାଙ୍କର ଶିକ୍ଷା ଓ ଦୀକ୍ଷାଗୁରୁ ଥିଲେ । କୋଲାବ ନଦୀ-କୂଳରେ ବାଲି ଉପରେ କାଠି ଧରି ସେ ଶିଖିଲେ ତାଙ୍କର ପ୍ରଥମ ଅକ୍ଷର । ବାଲିଶେଯ ହେଲା ତାଙ୍କ ସିଲଟ । ନିଜ ନାଆଁଟା ଲେଖିପାରିବାଟା ତାଙ୍କ ପାଇଁ ବହୁତ ବଡ଼କଥା ହେଲା । ସେତିକରେ ପାଠ ଶେଷ । ବହି ପଢ଼ିପାରିଲେ ବହୁତ ଡେରିରେ । ସେ ଓଡ଼ିଆ, ଗାଦବା, ପରଜାଭାଷାର ମିଶାମିଶି ଦେଶିଆ ଭାଷା କହୁଥିଲେ—ସବୁ ଭୂମିଆ ଯେଉଁ ଭାଷାରେ କଥା ହେଉଥିଲେ ସେଇ ଭାଷାରେ । ଲକ୍ଷ୍ମଣଙ୍କ ପିଲାଦିନର ସାଙ୍ଗ ଥିଲେ ଗୋବିନ୍ଦ ପୂଜାରୀ, ଭାଲୁଡମ୍ବ ଓ ବନସିଙ୍ଗ ଭୂମିଆ । ଏମାନଙ୍କ ସହିତ ସେ ତାଙ୍କ ପିଲାଦିନର ବହୁସମୟ କଟାଇଥିଲେ ।

ଲକ୍ଷ୍ମଣ ଭାରି ଭଲପାଉଥିଲେ ତାଙ୍କ ଗାଁ ତୋଟାକୁ ଆଉ କୋଲାବ ନଦୀକୁ । ଋତୁ ବଦଳେ, କୋଲାବର ପ୍ରକୃତି ବଦଳେ । ବର୍ଷାଦିନେ ସେ ହୁଏ ଅମାନିଆ ପାଣିସୁଅ, ଗଛ ବୃକ୍ଷ ଉପାଡ଼ିନିଏ । ଫେଣମୟ ହୋଇଯାଏ । ତା ଗର୍ଜନରେ ବଣର ଗୁଡି ଥରେ, ବଣର ବାଘ ଡରେ । ଖରାଦିନେ ପାଣି ନିର୍ମଳ, କଲକଲ, ସୁନ୍ଦରତାର ଦୃଶ୍ୟ ହୋଇଯାଏ । ଏଇ କୋଲାବ ଯେତେବେଳେ ମୁହାଁଏ ଗୁପ୍ତେଶ୍ୱର ଆଡ଼କୁ ହଠାତ୍ ଡେଇଁପଡ଼େ ଗୋଟିଏ ଜାଗାରେ କୋଡ଼ିଏ ଫୁଟ ତଳକୁ ପ୍ରପାତ ହୋଇ । ଏଇ ପ୍ରପାତ ପାଖରେ ବସି ତାର ଡେଉଁଥିବା ରୂପ, ବଣର ଶିରୀ, ଉପରର ନୀଳଆକାଶ ଆଉ ସାଙ୍ଗମାନଙ୍କ ସହ ଗପସପ ବେଶୀ ଭଲଲାଗେ ବାଳକ ଲକ୍ଷ୍ମଣଙ୍କୁ ।

ନଦୀ ସେପଟେ ଡାଗ୍ ପର୍ବତ । ବଣ ଘୋଡ଼ାଇପକାଇଛି ତାକୁ । ପର୍ବତ ଗୁଡିରେ କୁଟୁରୀ, ସମ୍ବର, ଜିଅଦ, ଖଡ଼ା (ବଡ଼ ଧୂସର ବଣୁଥିବା ଠେକୁଆ), ବଣକୁକୁଡ଼ା କେତେନା କେତେ । ରାମଗିରି ପାହାଡ଼ର ଗମ୍ବୁଲ, ବଣମଇଁଷି ବେଳେବେଳେ ବାଟଭୁଲି ପଳାଇ ଅସନ୍ତି ସେ ଆଡ଼େ । ପାଣିଘାଟରେ ବାଘର ଖୋଜ ପଡ଼େ । ମାଙ୍କଡ଼ ଡିଅନ୍ତି ଗଛରୁ ଗଛକୁ, ଏ ଡାଳରୁ ସେ ଡାଳ । ସେ ଶିକାର କରନ୍ତି । ଶର ଯୋଖି ହରଡ଼ଚଢ଼େଇ ମାରନ୍ତି—କେତେବେଳେ କେମିତି କୁଟୁରୀଟିଏ, ଠେକୁଆଟିଏ । ଏମିତି କଟିଗଲା ତାଙ୍କର ପିଲାଦିନ ପାରହୋଇ ବାରବରଷ ।

ତେର ବରଷର ହେଲା ବେଳକୁ ସେ ଲଙ୍ଗଳ ଧରିଲେ । ଜମି ଚାଷ କଲେ । ବଣକୁ ଗଲେ ଜନ୍ତୁ ଶିକାର କରିବା ପାଇଁ । ଅଭ୍ୟାସ ମଣିଷକୁ ବହୁତ କଥାରେ ପାରଙ୍ଗମ କରିଦିଏ । ସେ ଅବ୍ୟର୍ଥ ଶିକାରୀ ହୋଇଗଲେ ।

ଷୋଳ ବରଷ ହେଲା ବେଳକୁ ସେ ହୋଇଗଲେ ଭେଣ୍ଡିଆ । ଦେହର ରଙ୍ଗ ମାଟିଆ । ଶରୀର ହୃଷ୍ଟପୁଷ୍ଟ । ଖୋଲା ଦେହ, ଅଣ୍ଟାରେ ଲେଙ୍ଗୁଟି, କେତେବେଳେ କେମିତି ଦେହରେ ଅଙ୍ଗି (ହାତ ନଥିବା ହାଫ ସାର୍ଟ) ଖଣ୍ଡେ । ମୁଣ୍ଡରେ ମୁଣ୍ଡବନ୍ଧା । ଦେହ ତେଲ ଲଗାଇଲା ପରି ଚକ୍‌କଣ ।

ଏ ବୟସରେ ଆଦିବାସୀ ଯୁବକ କଣ ପାଳନ୍ତିଯାଏ । ତାସ୍, ଚାଙ୍ଗୁ, ଫୁଲ୍ଲାକୁ ନେଇ ଗୀତ ଗାଏ । ଗାଁର ଝିଅପିଲାମାନଙ୍କ ସାଙ୍ଗରେ ଅଣ୍ଟାରେ ହାତବେଇ ନାଚକରେ । ମହୁରୀର ତାନରେ ହଜେ । ସାଇଲେଇରେ ମଜେ । ଚଇତପରବ ହେଲେ ମାସ ମାସ ଧରି ଧାଙ୍ଗଡ଼ା ଧାଙ୍ଗଡ଼ିମାନେ ଗୀତ ଗାଆନ୍ତି କେତେ ପଦକୁ ଯୋଡ଼ି । ହେଲେ ଲକ୍ଷ୍ମଣ ବି ଗୀତ ଗାଉଥିଲେ ତାସ୍ପକଟ, କୋଲାବ ନଈ, ଲେଙ୍କ ପର୍ବତ, ବଣର ପକ୍ଷୀଙ୍କୁ ନେଇ । ଏହା ତାଙ୍କ ପ୍ରକୃତ ପ୍ରେମକୁ ବେଶୀ ଦେଖାଉଥିଲା ।

ସେ ପିଲାବେଳୁ ଦେଖିଆସୁଥିଲେ କେମିତି ରଜାଘର ଲୋକବାକ ଆସିଲେ, ପୋଲିସ ଜଙ୍ଗଲବାଲା ଆସିଲେ, ନେଗେଟିଭ୍ୟବାଲା ଆସିଲେ ତାଙ୍କ ଘରେ ରହନ୍ତି ଓ ତାଙ୍କ ବାପା ଏମାନଙ୍କ ପାଇଁ ଖାଇବା ପିଇବାର ବ୍ୟବସ୍ଥା କରନ୍ତି । ଏଇଥିପାଇଁ ସେ ନାଏକପଦ ପାଇଛନ୍ତି । ଏମାନଙ୍କ ସୁଖ ସୁବିଧା ବୁଝିବା ପାଇଁ ରଜା ଖଞ୍ଜି ଦେଇଛନ୍ତି ନାୟକବେଡ଼ା, ଦେଇଛନ୍ତି ଗୁଣ୍ଡପାଲି ଗାଁ । ବାବୁମାନେ ଆସିଲେ ଗଣ୍ଡା, ଚଳଣ, ଗାଁ ଗାଁ ବୁଲି ପରଜମାନଙ୍କଠୁ ସେମାନେ ଅମଳ କରିଥିବା ଯେତେକ ଭଲ ଚିଜ ନେଇଆଣନ୍ତି (ଜୋର ଜବରଦସ୍ତି) । କେତେ ବାବୁଙ୍କ ପାଇଁ ଖର୍ଚ୍ଚ ହୁଏ, କେତେ ତାଙ୍କ ଘରକୁ ଯାଏ । ନାୟକ କହୁଛୁ ସବୁଗାଇ ଦିଦାକୁ ହେବ—ଲୋକେ ଡର ମରି ରହନ୍ତି—ପ୍ରତିବାଦ କରିପାରନ୍ତି ନାହିଁ । ମାତ୍ର ଏହା ଦେଖି ଲକ୍ଷ୍ମଣ ସହିପାରନ୍ତି ନାହିଁ । ସେ ତାଙ୍କ ବାପାଙ୍କୁ ଏକଥା ପଚାରନ୍ତି । ବାପା ବୁଝାଉଥନ୍ତି—"ଏହା ପୂର୍ବକାଳର ରୀତି, ପ୍ରଥା । ଏଇଟାକୁ ଭାଙ୍ଗିହେବ ନାହିଁ ।" ମାନିପାରନ୍ତି ନାହିଁ ଲକ୍ଷ୍ମଣ । ତାଙ୍କ ମନ ବିଦ୍ରୋହ କରିଉଠେ । ହେଲେ ଗାଁବାସୀ ନାୟକଙ୍କ କଥାକୁ ବିଶ୍ୱାସ କରନ୍ତି ।

୧୯ ବର୍ଷ ବୟସରେ ଲକ୍ଷ୍ମଣ ପାରମ୍ପରିକ ରୀତିରେ ତେନ୍ତୁଲିଗୁମ୍ମାଠାରୁ ଅଳ୍ପଦୂରରେ ଥିବା ପାନଗୁମ୍ମା ଗାଁର ପାଣି ଭୂମିଆଙ୍କ ଝିଅ ମଙ୍ଗୁଲୀକୁ ବିବାହକଲେ । ମଙ୍ଗୁଲୀର ବୟସ ସେତେବେଳକୁ ସତର ବର୍ଷ । ଦିହର ଗଠଣ ସୁନ୍ଦର । ସେତେ ଉଚ୍ଚା ନୁହଁ । ବେଡ଼ା (ଜମି)କାମଠାରୁ ଗୋବରପୋଛା (ଗୁହାଳକାମ)ସାଏ, ରନ୍ଧାବଢ଼ାଠାରୁ ଘରର ସବୁକାମ ଭଲଭାବରେ କରିପାରନ୍ତି; ହେଲେ ଗାଁର ଅନ୍ୟଝିଅଙ୍କ ପରି ଗୀତ ଗାଇବା, ତେମସା ନାଚିବା ତାଙ୍କଦ୍ୱାରା ହୁଏନାହିଁ । ୨୧ ବର୍ଷ ବୟସରେ ଲକ୍ଷ୍ମଣ ବାପା ହେଲେ । ପଦଲମ ନାୟକ ଖୁବ ଖୁସି ନାତିକୁ ଦେଖି । ସେ ନାତିର ନାମ ଦେଲେ ରଘୁନାଥ ।

## ୪ । ଗାନ୍ଧୀମାହାତ୍ମ୍ୟ

୧୯୩୦ ମସିହାରେ ସାରା ଭାରତରେ ଶୁଭିଲା କେବଳ ଗୋଟିଏ କଥା । ଗାନ୍ଧୀ କହୁଛନ୍ତି ଲୁଣ ମାରିବାକୁ ହେବ । ଇଂରେଜ ସରକାର ଯେଉଁ ଆଇନ କରିଛି ଯେ କେହି ଲୁଣ ମାରିପାରିବେ ନାହିଁ ଏହା ବଡ଼ ଅନ୍ୟାୟ—ତାକୁ ଭାଙ୍ଗିବାକୁ ହେବ ।

ଗାନ୍ଧୀ ଡାକରାଦେଲେ—ସେ ସାବରମତୀ ଆଶ୍ରମରୁ ବାହାରି ଗୁଜରାଟର ଡାଣ୍ଡିଯାଏ ଛଅଶହ ମାଇଲ ପଦଯାତ୍ରାରେ ଯାଇ ଲୁଣ ମାରିବେ । ଏହା ଅହିଂସା ଉପାୟରେ ହେବ । ହୁଏତ ଇଂରେଜମାନେ ମାଡ଼ ମାରିବେ, ଅତ୍ୟାଚାର କରିବେ, ଜେଲ୍ ନେବେ, ନିଅନ୍ତୁ । ଏହି ଲୁଣମରା ୧୯୩୦ ମସିହା ଏପ୍ରିଲ ମାସ ୩୦ ତାରିଖରେ ହେବ । ସାରା ଭାରତର ଉପକୂଳ ପ୍ରଦେଶଗୁଡ଼ିକରେ ଏହା କରାଯିବ ।

ଓଡ଼ିଶାରେ ବିଶିଷ୍ଟ ଗାନ୍ଧୀବାଦୀ ନେତା ଗୋପବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ ବାଲେଶ୍ୱର ଜିଲ୍ଲାର ଇଞ୍ଚୁଡ଼ିଠାରେ ଲୁଣମାରିବା ସ୍ଥିରହେଲା । କିନ୍ତୁ ପ୍ରକୃତରେ ଏହାର ନେତୃତ୍ୱ ନେଲେ ଆଚାର୍ଯ୍ୟ ହରିହର ଦାସ । ମା' ରମାଦେବୀ, ମାଳତୀ ଚୌଧୁରୀ ଓ ଓଡ଼ିଶାର ବହୁ ନେତୃବୃନ୍ଦ ଏହି ଲୁଣମରା ଆନ୍ଦୋଳନରେ ଯୋଗଦେଇ ଏହି ଆନ୍ଦୋଳନକୁ ଓଡ଼ିଶା ଇତିହାସରେ ସ୍ମରଣୀୟ କରିଦେଲେ ।ଗୋପବନ୍ଧୁ ଚୌଧୁରୀଙ୍କ ପ୍ରେରଣାରେ ଓ ଉପଦେଶରେ ପ୍ରଭାବିତ ହୋଇ କୋରାପୁଟ ଜିଲ୍ଲା ନବରଙ୍ଗପୁର ସବ୍‌ଡିଭିଜନ୍‌ର ନବରଙ୍ଗପୁର ସହରର ତହସିଲ୍ ଅଫିସରେ ବଡ଼ବାବୁ ପଦବୀରେ କାମ କରୁଥିବା ରାଧାକୃଷ୍ଣ ବିଶ୍ୱାସରାୟ ଚାକିରି ଛାଡ଼ି କଂଗ୍ରେସ ଦଳରେ ମିଶିଲେ । ସେ ଦିବାକର ପଟ୍ଟନାୟକଙ୍କ ସହିତ ମିଶି ଲୁଣମରା ଆନ୍ଦୋଳନରେ ଯୋଗଦେଇ ବ୍ରହ୍ମପୁର ଜେଲ୍‌ରେ ବନ୍ଦୀହେଲେ ।

ରାଧାକୃଷ୍ଣ ବିଶ୍ୱାସରାୟ ୧୯୨୯ ମସିହା ଜୁଲାଇ ମାସରେ ଉତ୍କଳ କଂଗ୍ରେସ କମିଟିର ସଭାପତି ଗୋପବନ୍ଧୁ ଚୌଧୁରୀଙ୍କୁ ଚିଠି ଲେଖିଥିଲେ । ଏହି ଚିଠି ଲେଖାରୁ ହିଁ କୋରାପୁଟ ଜିଲ୍ଲାରେ କଂଗ୍ରେସ କାମ ଆରମ୍ଭ ହେଲା । ଗୋପବାବୁଙ୍କ କଥା ଅନୁସାରେ ରାଧାକୃଷ୍ଣ ବିଶ୍ୱାସରାୟ ଗଞ୍ଜାମର ଜଣେ ସ୍ୱାଧୀନତା ସଂଗ୍ରାମୀ ନିରଞ୍ଜନ ପଟ୍ଟନାୟକ ସହିତ ସମ୍ପର୍କ ରଖିଲେ । ତାଙ୍କୁ ଛାଡ଼ି କୋରାପୁଟ ଜିଲ୍ଲା କଂଗ୍ରେସର କାହାଣୀ ଓ ସ୍ୱାଧୀନତା ସଂଗ୍ରାମର କଥା ଲେଖାଯାଇପାରିବନାହିଁ ।

କୋରାପୁଟର କଂଗ୍ରେସନେତା ରାଧାକୃଷ୍ଣ ବିଶ୍ୱାସରାୟ ଓ ଗଞ୍ଜାମର କଂଗ୍ରେସନେତା ଦିବାକର ପଟ୍ଟନାୟକଙ୍କ ଉଦ୍ୟମ କ୍ରମେ କୋରାପୁଟ ଜିଲ୍ଲାର ପ୍ରାୟ ୫୦ ଜଣ ଗାନ୍ଧୀ ଗୁମାସ୍ତା (କଂଗ୍ରେସକର୍ମୀ) ବ୍ରହ୍ମପୁର ସତ୍ୟାଗ୍ରହ ଶିବିରରେ ଯୋଗଦେଇଥିଲେ । ଏହି ସମୟରେ ଜୟପୁର ସହରର ଖଦୀଭଣ୍ଡାର ଚଳାଉଥିବା ନରସିଂହ ସାହୁଙ୍କୁ ଗିରଫ କରାଗଲା ଓ ପରେ ପରେ ରାଧାକୃଷ୍ଣ ବିଶ୍ୱାସରାୟ ଓ ଦିବାକର ପଟ୍ଟନାୟକଙ୍କୁ ଗିରଫ କରି କୋରାପୁଟ ଜେଲ୍‌ରେ ରଖାଗଲା । ତାପରେ ସେମାନଙ୍କୁ ବିଶାଖାପାଟଣା ଜେଲ୍‌କୁ ସ୍ଥାନାନ୍ତରିତ କରାଗଲା ।

୧୯୩୦ ମସିହାରୁ ୧୯୩୪ ମସିହାଯାଏ ଏମାନେ ଜେଲରେ ରହିଲେ—ଦୀର୍ଘ ଚାରିବର୍ଷ । ଏମାନଙ୍କ ତ୍ୟାଗ ଗାନ୍ଧୀଙ୍କ ଆଦର୍ଶକୁ ଚରିତରେ ଫୁଟାଇବା ଯୋଗୁଁ ସମ୍ଭବ ହୋଇଥିଲା । ଏମିତି ଏମାନଙ୍କ ବାଟ ଦେଇ ଗାନ୍ଧୀ ଡାକରା ଏ ଜିଲ୍ଲାକୁ ଆସି ଭେଦ-

ଗଲା ବଲବଣ ପାହାଡ଼ ପର୍ବତ । ସୋଡ଼ାମାଳି, ପଞ୍ଚପାଟମାଳି, କୃଟୁଣିମାଳ, ଦେଓଁଘାଟି, ବଣ୍ଡା ପର୍ବତ, ଲେକ ଓ ଲୁଲେରୁ ପର୍ବତ ତେଣୁ ବଂଶଧାରା, ନାଗାବଲୀ, ସିଲେରୁ, ଶାଓବରୀ, ଇନ୍ଦ୍ରାବତୀର ସ୍ରୁତ ତେଣୁ ଯେତେ ମାଟିର ମଣିଷ ବଣ୍ଡା, କୋୟା, ଭୂମିଆ, ଗାଦବା, ପରଜା, କନ୍ଧ, ଜତରା, ଗଣ୍ଡ କାହାକୁ ଛାଡ଼ିଲା ନାହିଁ ଏ ଡାକରା । ସମସ୍ତେ ଯେମିତ କଂଗ୍ରେସର ଡାକରେ ଶୁଣିପାରିଲେ ଯୁଗଯୁଗର ଗୋଡ, ବେଠି, ଗଡ଼ଯ ଉଠିଯିବାର କଥା ।

କଷ୍ଟ ସହି କଷ୍ଟରୁ ମୁକ୍ତିପାଇବାର୍ହି ହେବ ସତ୍ୟାଗ୍ରହ, ଏହା ସତ୍ୟହେଲା ଏ ଜଲ୍ଲାର ଆଦମ ଆଦିବାସୀଙ୍କ ପାଇଁ । ମହାତ୍ମା ହୋଇଗଲେ ମାହାପ୍ରଭୁ, ଦେବତା ।

## ୫ । ଲକ୍ଷ୍ମଣ ଭୂମିଆରୁ ଲକ୍ଷ୍ମଣ ନାୟକ

ଲକ୍ଷ୍ମଣ ପିଲାବେଳୁ ଦେଖୁଥିଲେ ନିଜ ଆଦିବାସୀ ଭାଇଙ୍କ ଦୁଃଖ, ଦୁର୍ଦ୍ଦଶା, ଅସହାୟତା । ତାଙ୍କ ମନରେ ଦୁଃଖ ଆସୁଥିଲା କିଛି କରିପାରୁନଥିଲେ ବୋଲି । ତାଙ୍କ ବାପା ଲ୍ଭରପାଲି ଗାର ମୁସ୍ତାଦାର, ରଜା ହୁକୁମ ତାମିଲ କରିବା ଲୋକ । ଯେଉଁମାନେ କଷ୍ଟ ପାଉଛନ୍ତି ସେମାନେ ପ୍ରଭୁଭକ୍ତ, ଭାଗ୍ୟବାଦୀ, ଅନ୍ଧବିଶ୍ୱାସୀ, ଯୁଗଯୁଗର ସମର୍ପିତ ଭାବ ସେମାନଙ୍କ ରକ୍ତରେ । ହଠାତ୍ ଏକାଠି ହୋଇ ରଜାଘର ଲୋକଙ୍କ ବିରୁଦ୍ଧରେ ମେଳି ବାନ୍ଧିବାକୁ ସେମାନଙ୍କୁ ମତାଇବା ସେତେ ସହଜ ନୁହେଁ । କଣ କଲେ ଏମାନଙ୍କୁ ଦୁଃଖରୁ ମୁକୁଳେଇ ହେବ ସେ ବିଷୟରେ ସେ ଗଭୀର ଚିନ୍ତାକଲେ । ହଠାତ୍ ତାଙ୍କର ମନେପଡ଼ିଲା ଗୋଟିଏ ନାମ—ଚନ୍ଦ୍ରକୁଟିଆ ।

ଚନ୍ଦ୍ରକୁଟିଆ କୋୟା ଆଦିବାସୀ, ବିପ୍ଳବୀ, ସଂଗ୍ରାମୀ । ୧୯୨୨ରୁ ୧୯୨୪ ଯାଏ ଯେଉଁ ୩ ବର୍ଷ ଧରି ଆନ୍ଧ୍ରପ୍ରଦେଶର ଅଲ୍ଲୁରି ସୀତାରାମେୟା ରାଜୁଙ୍କ ନେତୃତ୍ୱରେ ଜଙ୍ଗଲଯାନୁ, ଲଙ୍ଗଲପାନୁ, ବଣପାନୁକୁ ନେଇ ଆଦିବାସୀମାନେ ଇଂରେଜ ସରକାର ବିରୁଦ୍ଧରେ ସଂଗ୍ରାମ କରିଥିଲେ, ସେଇ ସଂଗ୍ରାମର ଜଣେ ବଡ଼ ବୀର ଥିଲେ ଚନ୍ଦ୍ରକୁଟିଆ । ସେ ବଣରେ ଲୁଚିରହି ଲୋକଙ୍କୁ ଏକାଠି କରି ରାତିରେ ଆକ୍ରମଣ କରୁଥିଲେ ଶତ୍ରୁପକ୍ଷକୁ । ୧୯୨୪ରେ ସୀତାରାମ ରାଜୁ ଧରାପଡ଼ି ମୃତ୍ୟୁବରଣକଲେ । ଆଦିବାସୀଙ୍କ ଆନ୍ଦୋଳନର ଦମନ ହେଲା । ସେହି ଚନ୍ଦ୍ରକୁଟିଆଙ୍କ ସହିତ କଥାବାର୍ତ୍ତା କରି ଲୋକମାନଙ୍କୁ ଏକାଠି କରିବାପାଇଁ ଯଦିଓ ସେ ଚେଷ୍ଟାକଲେ, କିନ୍ତୁ ଫିରୁସ୍ତ ଆନ୍ଦୋଳନର ଶେଷ ପରିଣତି ଦେଖି ଏହା ଯେ ଠିକ୍ ବାଟ ନୁହେଁ ଏହା ବୁଝିପାରିଥିଲେ । ତାପରେ ସେ ଆଉ ଚନ୍ଦ୍ରକୁଟିଆ ସହିତ କୌଣସି ସମ୍ପର୍କ ରଖିଲେ ନାହିଁ । ହିଂସାଦ୍ୱାରା ଯେ ସମସ୍ୟାର ସମାଧାନ ହୋଇପାରେ ନାହିଁ, ବରଂ ସମସ୍ୟା ବଢ଼ିଥାଏ, ଏହା ବୋଧେ ତାଙ୍କ ମନ ତାଙ୍କୁ ବୁଝାଇଦେଇଥିଲା ।

ତାପରେ ସେ ସ୍ଥିରକଲେ ଲୋକମାନଙ୍କ ଦୁଃଖ ବୁଝିବା ପାଇଁ ହେଲେ ସେମାନଙ୍କ ସହିତ ଏକ ହେବାକୁ ହେବ । ତାଙ୍କ ଦୁଃଖରେ ଦୁଃଖୀ, ସୁଖରେ ସୁଖୀ ହେଲେ ଯାଇ ସମସ୍ତଙ୍କ ମନରେ ବିଶ୍ୱାସ ଜନ୍ମାଇହେବ । ତାଙ୍କୁ ଛାଡ଼ି ନୁହେଁ, ତାଙ୍କ ଭିତରେ ରହିଲେ ଯାଇ ଅତ୍ୟାଚାରର ମୁକାବିଲା କରିହେବ ।

ସେ ଦେଖିଥିଲେ ବସନ୍ତରୋଗ ବ୍ୟାପିଲେ କେମିତି ବଣର ମଣିଷ ଅନ୍ଧବିଶ୍ୱାସରେ ଜନ୍ତୁ ବଳିଦେଇ ମନାସୁଛନ୍ତି ରୋଗରୁ ଭଲହେବା ପାଇଁ । ହାଡ଼ଭଙ୍ଗା ପରିଶ୍ରମ କରି ମଧ୍ୟ ଦରିଦ୍ର ଦି'ମୁଠା ପେଟ ପୁରାଇ ଖାଇବାକୁ ପାଉନାହିଁ । ସାଧାରଣ ରୋଗ ବଇରାଗ ହେଲେ ବି ଦିସାରୀ ପୂଜାରୀଙ୍କୁ ମନଦେଉଛନ୍ତି, କୁକୁଡ଼ା ଛୁଆ ଦେଉଛନ୍ତି, କାଳିସୀ ବସାଉଛନ୍ତି, ସର୍ବସ୍ୱାନ୍ତ ହେଉଛନ୍ତି । ସେମାନଙ୍କ ମନରୁ ଅନ୍ଧବିଶ୍ୱାସ ଦୂରକରିବା ପାଇଁ ସେ ଦିସାରୀ କାମ (କବିରାଜ ବୃତ୍ତି—ଔଷଧ ଦେଇ ରୋଗୀକୁ ରୋଗମୁକ୍ତ କରିବା କାମ) କରିବେ ବୋଲି ସ୍ଥିରକଲେ । ପିଲାବେଳୁ ବଣରେ ବୁଲି ନିଜ ବାପା ଓ ଗାଁର ବଡ଼ବୁଢ଼ାଙ୍କଠୁ ଦେଖି ଶୁଣି ସେ ଚିହ୍ନିଥିଲେ ବହୁ ବନସ୍ପତି, ଗଛ, ବୃକ୍ଷ ଆଉ ଜାଣିଥିଲେ ତାର ଔଷଧ ଗୁଣ । ନିଜର ବୁଦ୍ଧି, ନିଷ୍ଠାଯୋଗୁଁ ରୋଗ ନିଦାନ କରି ସେ ନିଃସ୍ୱାର୍ଥପର ଭାବେ ରୋଗୀଙ୍କର ସେବାକଲେ । ଝଡ଼ାଫୁଙ୍କା କଲେ । ଫଳରେ ଲୋକଙ୍କ ମନରେ ତାଙ୍କ ପ୍ରତି ବିଶ୍ୱାସ ଆସିଲା ।

ତାପରେ ସେ ଗାଁର ପୂଜାରୀ କାମ କଲେ । ଗାଁଗୁଡ଼ିଠାରେ ଠାକୁରାଣୀ ମା, ମାଉଲି ମାତା, ଖାରଖମ୍ବଙ୍କର ପୂଜାବିଧି ଅନୁଷ୍ଠାନ କଲେ । ମନ୍ତ୍ର ପଢ଼ିଲେ । ଲୋକଙ୍କ ମଙ୍ଗଳ ପାଇଁ ଆଣ୍ଠୁମାଡ଼ି ବସି ଦେବତାଙ୍କୁ ମାଗିଲେ ଜମି ପାଇଁ ପାଣି, ଗାଈ ପାଇଁ ଘାସ । ସେ ଏକାଧାରରେ ହୋଇଗଲେ ଦିସାରୀ ଓ ପୂଜାରୀ ।

ତେନ୍ତୁଳିଗୁମ୍ମାର ସର୍ବମାନ୍ୟ ବ୍ୟକ୍ତି । ଗାଁରୁ, ଦୂରଦୂରାନ୍ତରୁ ଲୋକେ ଆସି ତାଙ୍କ ନିକଟରେ ରୁଣ୍ଡ ହେଲେ । ସେ ହେବାକୁ ଯାଉଥିଲେ ଲୋକମାନଙ୍କର ବିଶ୍ୱାସୀ ମଣିଷ ।

ତାପରେ ଲକ୍ଷ୍ମଣ ନିଜ ସାଙ୍ଗ ଗୋବିନ୍ଦ ପୂଜାରୀ, ଖଲୁଡ଼ମ୍ବୁ, ବନସିଙ୍ଗ ପୂଜାରୀଙ୍କ ସଙ୍ଗରେ ମାଲକାନଗିରିର ବହୁ ଅଞ୍ଚଳ, ଗ୍ରାମ ବୁଲିଲେ । କୋଲାବର ସ୍ରୋତ ଡେଇଁ, ପାହାଡ଼ପର୍ବତ ଚଢ଼ି ଓହ୍ଲାଇ, ବଣର ବଣଜନ୍ତୁଙ୍କ ଆକ୍ରମଣକୁ ନଡରି ସେ ମିଶିଲେ ସାନଗୁମ୍ମା, ବେଙ୍କଂଗୁଡ଼ା, କରତନପାଲି, ଖପରି, ଉଦସ୍ୱଗିରି. ଲୋକଗୁଡ଼ା, କଚଗୁଡ଼ା, ଲୁଲେରୁ, ଝିଙ୍ଗିଗୁଡ଼ା. ସାରଙ୍ଗପାଲି, କୁଟିଅଗୁଡ଼ା, କଲଗୁଡ଼ା, ନେତଲଖଣ୍ଡି, କ୍ୟାଙ୍ଗ, ତାଲପଦର, ଭଇଁଷାଘାଟ, ନୂଅଗୁଡ଼ା, ଦାରୁବେଡା, ଟେମୁରୁପାଲି, ସରିଗୁଡ଼ା, ଘଙ୍ଗାଓ୍ବାଡ଼ା, ମହୁପଦର, ବାକଲଗୁଡ଼ା ବହୁ ଗ୍ରାମର ଲୋକଙ୍କ ସହିତ । ସେମାନଙ୍କ ସୁଖ ଦୁଃଖରେ ଠିଆହେଲେ । ସେବାକଲେ । ଏମିତି ସେ ଲୋକଙ୍କର ନିଜ ଲୋକ ହୋଇଗଲେ । ଅତି ପ୍ରିୟ, ସୋଦର, ଆତ୍ମୀୟ । ସେ ଆସିଲେ ବୈପାରୀଗୁଡ଼ା, ମାଟିଲି. ସାଲେମି, ଜୟପୁର । ବହୁ ଲୋକଙ୍କ ସଙ୍ଗରେ ମିଶିଲେ ।

ତାଙ୍କ ଚେଷ୍ଟାରେ ତେନ୍ତୁଳିଗୁମ୍ମା ହୋଇଗଲା ଆଦର୍ଶ ଗାଁଟିଏ । ଲୋକେ ତାଙ୍କଠୁ ଶିଖିଲେ କେମିତି ଚାଷକଲେ ବେଶୀ ଫସଲ ହେବ, ସୁଖରେ ଜୀଇଁହେବ ଜୀବନ । ଏମିତି ଲୋକଙ୍କ ଭିତରେ କାମ କରି ସେ ୩୯ ବର୍ଷ ବୟସରେ ପାଦ ଦେଲେ ।

୧୯୩୦ ମସିହାରେ ବୟସାଧିକ୍ୟ ଯୋଗୁଁ ପଦଲମ ନାୟକ ଗାଁରଖଣ୍ଡ ଗାଁର ଲୋକମାନଙ୍କର ସୁଖସୁବିଧା ବୁଝିବା ସମ୍ଭବ ହେଲା ନାହିଁ । ବାତ୍ୟାବନ୍ୟା ଆସିଲେ ସେମାନଙ୍କ ପାଇଁ ରସଦ ଯୋଗାଡ଼ିବା, ଖାଇବାର ବ୍ୟବସ୍ଥା କରିବା, ଦଶହରା ଆସିଲେ ରଜାଘର ପାଇଁ ଭେଟି ଯୋଗାଡ଼କରିବା ପାଇଁ ଆଉ ଦେହରେ ବଳ ନଥିଲା ତାଙ୍କର । ସେ ତାଙ୍କ ବଡପୁଅ ସନିଆ ଭୂମିଆକୁ ନାୟକ ପଦ ଦେବା ପାଇଁ ଇଚ୍ଛାକଲେ, କିନ୍ତୁ ତାଙ୍କ ବଡ଼ପୁଅ ଏହା ସମ୍ଭାଳିବାକୁ ସମର୍ଥ ନଥିଲା, ଏଣୁ ପଦଲମଙ୍କ ଦୃଷ୍ଟି ଲକ୍ଷ୍ମଣ ଉପରେ ପଡ଼ିଲା । ପଦଲମଙ୍କ ଅନୁଭବୀ ଆଖି ଚିହ୍ନିଲା ପାରିଥିଲା ଲକ୍ଷ୍ମଣଙ୍କୁ—ସେ ହିଁ ପରିବାର ସମ୍ଭାଳି ପାରିବ—ଗାଁର ଭଲମନ୍ଦ ବୁଝିପାରିବ । ନାୟକ ହେବାର ସବୁ ଗୁଣ ଅଛି ତାଙ୍କ ମଝିଆଁ ପୁଅର । ପଦଲମ ନାୟକ ମୁସ୍ତାଦାର କାମ ସମର୍ପିଦେଲେ ନିଜ ପୁଅ ଲକ୍ଷ୍ମଣଙ୍କୁ । ଜୟପୁର ରାଜଦରବାର ଲକ୍ଷ୍ମଣ ଭୂମିଆଙ୍କୁ ତେନ୍ତୁଳିଗୁମ୍ମାର ମୁସ୍ତାଦାର ସ୍ୱୀକାର କଲେ । ଲକ୍ଷ୍ମଣ ଭୂମିଆ ଲୋକଙ୍କ ପାଇଁ ହୋଇଗଲେ ଲକ୍ଷ୍ମଣ ନାୟକ ।

ଲକ୍ଷ୍ମଣ ମୁସ୍ତାଦାର ହେଲପରେ ତାଙ୍କ ବାପାଙ୍କ ସବୁକାମ ସେମିତି ଦୋହରାଇଲେ । ଲୋକଙ୍କଠାରୁ ଖଜଣା ଆଦାୟ କରିବା, ରଜାଘରେ ପେଠ କରିବା, ସରକାରୀ ଲୋକ ଆସିଲେ ସେମାନଙ୍କ ସୁଖ ସୁବିଧା ବୁଝିବା—ଏହା ଯେମିତି ପ୍ରଥା । ଲୋକ ବି ଏହି କାମରେ ଅଭ୍ୟସ୍ତ । କିନ୍ତୁ ଲକ୍ଷ୍ମଣ ଖୁସିମନରେ ଏହା କରିପାରିଲେ ନାହିଁ । ଲୋକଙ୍କ ଦୁଃଖ କଷ୍ଟ ସବୁବେଳେ ତାଙ୍କ ମନକୁ ମଥିଦେଉଥିଲା । ସେ ଅପେକ୍ଷା କରୁଥିଲେ ଯେମିତି ଏକ ଦେବମୂର୍ତ୍ତିକୁ ଯାହା ଆସିଲେ ଏସବୁ ଦୂର ହୋଇଯିବ— ଦୂର ହୋଇଯିବ ନିଷ୍ଠୁର ଶୋଷଣ ଖଟଣୀ, ବେଠି ଖଟା ଓ ଗଡ଼ମର ଦାଉ । ଏହା ଆସିବା ପାଇଁ ତାଙ୍କୁ ୧୯୩୦ରୁ ୧୯୩୭ ଯାଏ ଅପେକ୍ଷା କରିବାକୁ ପଡ଼ିଲା ।

## ୭ । କୋରାପୁଟରେ କଂଗ୍ରେସ ଆନ୍ଦୋଳନ ଓ ଲକ୍ଷ୍ମଣ ନାୟକ

ଆଦିବାସୀ ବଣର ଚଢ଼େଇ ପରି ମୁକ୍ତ, ବନ୍ଧନହୀନ ଜୀବନଯାପନରେ ଅଭ୍ୟସ୍ତ । ସେମାନେ ଚାହାନ୍ତି ନାହିଁ କେହି ତାଙ୍କ ସ୍ୱାଧୀନତାରେ ହସ୍ତକ୍ଷେପ କରୁ । ଏଣୁ ଯେତେବେଳେ ସେମାନଙ୍କ ସ୍ୱାଧୀନତା ବିପଦରେ ପଡ଼ିଛି, ସେମାନଙ୍କୁ ଶୋଷଣ କରାଯାଇଛି, ଅତ୍ୟାଚାର କରାଯାଇଛି, ସେତେବେଳେ ସେମାନେ ବିଦ୍ରୋହ କରିଛନ୍ତି ନିଜର ଅଧିକାରର ସୁରକ୍ଷା ପାଇଁ । ଏଣୁ ସ୍ୱାଧୀନତା ପାଇଁ ମହାତ୍ମାଙ୍କ ଡାକରାର ପ୍ରଭାବ ଯେ କୋରାପୁଟରେ

ପଡ଼ିଲା ଏଥିରେ ଆଶ୍ଚର୍ଯ୍ୟ ହେବାର ନଥିଲା । ଜାତୀୟ ସ୍ୱାଧୀନତା ଆନ୍ଦୋଳନରେ ଏଠା ସ୍ଥାନୀୟ ନେତାମାନେ ଯୋଗଦେଲେ । ୧୯୨୯ ମସିହାରେ କଂଗ୍ରେସର ଲକ୍ଷ୍ୟ ଓ ଉଦ୍ଦେଶ୍ୟକୁ କୋରାପୁଟ ଜିଲ୍ଲାର ସବୁ ଗାଁରେ ପହଞ୍ଚାଇବା ପାଇଁ ଓଡ଼ିଶାର ଗାନ୍ଧିବାଦୀ ନେତା ଗୋପବନ୍ଧୁ ଚୌଧୁରୀ ଓ ଅନ୍ୟ ନେତାମାନେ କୋରାପୁଟ ଆସିଲେ । କୋରା-ପୁଟରେ ସୂତାକାଟିବା, ଖଦୀ ବୁଣିବା ଓ ଏହାଦ୍ୱାରା କଂଗ୍ରେସ କଥା ଲୋକଙ୍କୁ ବୁଝାଇବା ପାଇଁ ଚେଷ୍ଟା କରାଗଲା । ଗୋପବନ୍ଧୁ ଚୌଧୁରୀ ଗାନ୍ଧୀସେବା ସଂଘ ଜରିଆରେ ଏ କାମ କଲେ । କୋରାପୁଟର ପ୍ରଥମ ଖଦଡ଼ ଖଦୀ ବିକ୍ରୀକେନ୍ଦ୍ର ଜୟପୁରରେ ଖୋଲିଲା । ଏହି ଦୋକାନ ହେଲା କଂଗ୍ରେସବାର୍ତ୍ତା ପ୍ରଚାରର ମୁଖ୍ୟସ୍ଥାନ ।

୧୯୩୦ ମସିହାରେ ଗୁଣୁପୁର ଅଞ୍ଚଳର ସଉରମାନେ ଜମି ଓ ହଳଉପରେ ଖଜଣା ପଡ଼ିବାରୁ ତାର ପ୍ରତିବାଦରେ ବିଦ୍ରୋହ କଲେ । ଏମିତି କାଁଭାଁ ବିଦ୍ରୋହ ଓ ପ୍ରତିବାଦ ଭିତରେ ଲବଣ ସତ୍ୟାଗ୍ରହ ଆସିଲା । ଏହି ଲବଣ ସତ୍ୟାଗ୍ରହ ଶିବିରରେ ଯୋଗଦେଇ ରାଧାକୃଷ୍ଣ ବିଶ୍ୱାସରାୟ ଗୋଟାପଣେ ପାଲଟିଗଲେ ଗାନ୍ଧୀଙ୍କ ଦେଖାଇଥିବା ବାଟର ଜାଗ୍ରତପ୍ରହରୀ । କଂଗ୍ରେସ ହେଲା ତାଙ୍କ ଜୀବନ । କଂଗ୍ରେସର ଆଦର୍ଶ ହେଲା ଜୀବନର ମନ୍ତ୍ର । ସତ୍ୟ, ଅହିଂସା, ଅସ୍ତେୟ ଆଦି ଏକାଦଶବ୍ରତର ଅଧିକାରୀ ହୋଇ ରାଧାକୃଷ୍ଣ ବିଶ୍ୱାସରାୟ କୋରାପୁଟ ଜିଲ୍ଲାର ଗାନ୍ଧୀ ହୋଇଗଲେ । ସତ୍ୟାନ୍ୱେଷୀ, ନିର୍ଭିକ, ଦେଶପାଇଁ ସବୁ ଦୁଃଖକଷ୍ଟ ସହିବାର ପଣନେଇ ସେ ପାଲଟିଗଲେ ଏ ଜିଲ୍ଲାର ମହାନ୍ ନେତା, ଦିଗ୍‌ଦର୍ଶକ ।

ଏମିତି ଘନଘଟା ଭିତରେ; କୁଳବୃଦ୍ଧ ମଧୁବାବୁ, ଗୌରୀଶଙ୍କର, ଫକୀରମୋହନ ଓ ବହୁ କବି, ମନୀଷୀ ତଥା ପାରଳା ମହାରାଜା ଗଜପତି କୃଷ୍ଣଚନ୍ଦ୍ରଙ୍କ ଅଦମ୍ୟ ଚେଷ୍ଟା ଫଳରେ ୧୯୩୬ ମସିହା ଏପ୍ରିଲ ମାସ ୧ ତାରିଖରେ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ହେଲା ଓ ଜୟପୁର ରାଜ୍ୟ ବିଶାଖାପାଟଣାଠାରୁ ଅଲଗା ହୋଇ କୋରାପୁଟ ଜିଲ୍ଲାରେ ପରିଣତହେଲା । ଓଡ଼ିଶା ପ୍ରଦେଶର ପ୍ରଥମ ଗଭର୍ଣ୍ଣର ଭାବେ ସାର୍ ଜନ୍ ଅଷ୍ଟିନ୍ ହବାକ୍ ଯୋଗଦେଲେ । ତାର କିଛୁଦିନ ପରେ ସେ କୋରାପୁଟ ଗସ୍ତରେ ଆସିଲେ । ସେ ଥିଲେ ମହାମହିମ ଇଂରେଜ ସରକାରଙ୍କ ଚଳନ୍ତି ପ୍ରତିନିଧି, ଅଖଣ୍ଡ ପ୍ରଭୁସତ୍ତାର ଅଧିକାରୀ । ସେ କୋରାପୁଟ ପରିଦର୍ଶନରେ ଆସୁଥିବା ଜାଣି କୋରାପୁଟ ଜିଲ୍ଲା ସରକାରୀ କର୍ମଚାରୀ ଓ ରାଜାଙ୍କ କର୍ମଚାରୀ ଗଭର୍ଣ୍ଣରଙ୍କ ସୁଖସୁବିଧା ଯୋଗାଡ଼ିବା ପାଇଁ ତତ୍ପର ହୋଇ-ପଡ଼ିଲେ । ସାହେବ ଓ ତାଙ୍କ ଅମଲାମାନଙ୍କୁ ଯେମିତି କୌଣସି ଅସୁବିଧାରେ ପଡ଼ିବାକୁ ନହୁଏ ସେଥିପାଇଁ ଜୟପୁର ମହାରାଜା ଚତୁର୍ଥ ବିକ୍ରମଦେଓ ନିଜେ ସବୁ ତଦାରଖ କଲେ । ସେ ୧୯୩୧ରୁ ୧୯୫୧ ଯାଏ ରାଜା ଥିଲେ ।

ଲୋକଙ୍କଠାରୁ ସରୁଚାଉଳ, ମୁଗଡାଲି, ଭଲଘିଅ, କୁକୁଡ଼ା, ମେଣ୍ଢା, ଛେଳି ବିନା ମୂଲ୍ୟରେ ସଂଗ୍ରହ କରାଗଲା । କେହି ମନାକଲେ ରାଜଦଣ୍ଡ, ନକଲେ ସବୁଗଲା । କଷ୍ଟକର

ଅନିଥିବା ଭୂତମୂଠାକ ହିସାବ କେବେଳ ଅଡବାସୀ ସନ୍ତ୍ରସ୍ତ ହୋଇଗଲେ । ଘରେ ଥିବା ମେଣ୍ଢା ଛେଳି ଛଡ଼େଇନଆଗଲା । ଗଣ୍ଡା, ଚଲାଣ, ନାୟକ, ଗଉଣ୍ଡିଆ ସମସ୍ତେ ଏ ଯୋଗାଡ଼ରେ ଏତେ ବ୍ୟସ୍ତରହିଲେ ଯେ ସାଧାରଣ ଲୋକଙ୍କର ଆଖିର ଲୁହ ଦେଖିବାକୁ କାହାର ବେଳ ରହିଲ ନାହିଁ ।

ସାହେବ ଶିକାରପ୍ରିୟ । ସାହେବଙ୍କ ଶିକାର ପାଇଁ ବଣ ଘେର ଜନ୍ତୁ ତଡ଼ିବା, ଢୋଲ ବାଡ଼େଇବା, ନିଆଁ ହୁଳା ଦେଖାଇବା, ମଞ୍ଚାବାନ୍ଧିବା, ମଞ୍ଚା ପାଖରେ ପଶୁ ବାନ୍ଧିବା କାମ ପାଇଁ ସାହୁକାରମାନଙ୍କଠାରେ ଗୋତି ଖଟୁଥିବା ଲୋକମାନଙ୍କୁ ଯୋଗାଡ଼କରି ରଖାଗଲା । ଏହି ଶିକାର ପାଇଁ ରାମଗିରି-ଭୂପ୍ରେଶ୍ବର ଅଞ୍ଚଳର ବିସ୍ତୀର୍ଣ୍ଣ ଘଞ୍ଚ ଅରଣ୍ୟକୁ ବଛାଗଲା, ଯେଉଁଠି ଅସଂଖ୍ୟ ସମ୍ବର, କଅାଦ, ବଣମଇଁଷି, କୁଟୁରା, ମୟୂର, ବାଘଙ୍କ ନିବାସ ଥିଲା । ରାଜାଙ୍କ ହାତୀରେ ବସି ସାହେବ ଶିକାର କରିବେ ।

ସାହେବ ଆସିଲେ, ଖାଇଲେ, ପିଇଲେ, ବଙ୍ଗଳାରେ ମଉଜ କଲେ । ହାତୀରେ ବସି ରାମଗିରି ବଣରେ ଜନ୍ତୁ ଶିକାର କଲେ । ତାଙ୍କ ଅମଲା ଯାହା ପାଇଲେ ବୋହିଲେ । ବହୁମୂଲ୍ୟର ଭେଟି, ଉପହାର ଦେଇ ଜୟପୁର ମହାରାଜା ସାହେବଙ୍କ ମନ ତୋଷିଲେ । ବଣଜଙ୍ଗଲର ଲୋକେ ସନ୍ତ୍ରସ୍ତ ହୋଇ ଲୁହ ନକାଢ଼ି ରକ୍ତ କାଢ଼ିଲେ । ସବୁଠୁ ବେଶି ଦଣ୍ଡ ଭୋଗିଲେ ବୈପାରୀଗୁଡ଼ା, ରାମଗିରିର ବନବାସୀ ! ଲକ୍ଷ୍ମଣ ନାୟକ ଲୋକଙ୍କ ଦୁର୍ଦ୍ଦଶା ଦେଖି ବିଚଳିତ ହୋଇପଡ଼ିଲେ । ସେ ଅତ୍ୟନ୍ତ ଦୁଃଖିତ ହେଲେ । ସମସ୍ୟାର ସମାଧାନ ଲୋଡ଼ିବା ପାଇଁ ସେ ଗଲେ ଧୂମର ଗ୍ରା: ପ: କଂଗ୍ରେସ କମିଟିର ସଭାପତି ନୀଳକଣ୍ଠ ପାଢ଼ୀଙ୍କ ନିକଟକୁ । ନୀଳକଣ୍ଠ ପାଢ଼ୀ ସେ ଅଞ୍ଚଳର କଂଗ୍ରେସକର୍ମୀ, ନାମଡାକ ତାଙ୍କର । ଲକ୍ଷ୍ମଣ ତାଙ୍କୁ ବେଶୀ ମାନନ୍ତି । ସବୁ ଶୁଣି ଲୋକମାନେ ହରାଇ-ଥିବା ସମ୍ପତ୍ତିର ତାଲିକାକରି ନୀଳକଣ୍ଠ ପାଢ଼ୀ ଜୟପୁର ଗଲେ । କୋରାପୁଟର ସବୁଠାରୁ ବଡ଼ନେତା ରାଧାକୃଷ୍ଣ ବିଶ୍ୱାସରାୟ ଏହି ଘଟଣା ଖବରକାଗଜରେ ଛପାଇଲେ । ସମାଜ କାଗଜ ଏହି ଅତ୍ୟାଚାରକୁ ଛାପିବାରୁ ସାରା ଓଡ଼ିଶାରେ ଏହାର ଭୀଷଣ ପ୍ରତିକ୍ରିୟା ହେଲା । କଥା ଏତେଦୂରକୁ ଗଲାଯେ ଇଂରେଜ ସରକାର ଲୋକମାନଙ୍କଠାରୁ ନିଆଯାଇଥିବା ଜିନିଷ ପାଇଁ ମୂଲ୍ୟ ଦେବାକୁ ଆଦେଶଦେଲେ ।

ଏହି ଘଟଣା ଦେଖି ଲକ୍ଷ୍ମଣ ନାୟକଙ୍କର ବିଶ୍ୱାସ ହେଲା ଯେ କଂଗ୍ରେସ ଲୋକଙ୍କର ଦୁଃଖ ଦୂରକରିପାରିବ । କଂଗ୍ରେସକୁ ଧରିଲେ ହିଁ ଭଲହେବ, ଏହିକଥା ସେ ମନଭିତର-ଯାଏ ବିଶ୍ୱାସ କରିଗଲେ । ଲକ୍ଷ୍ମଣ କଂଗ୍ରେସରେ ମିଶିବେ ବୋଲି ମନେ ମନେ ସ୍ଥିର-କଲେ । ଲୋକମାନେ ଜାଣିଲେ ସମସ୍ତେ ମିଶିଲେ, ଏକାଠି ହେଲେ ବଡ଼ ବଡ଼ କାମ ସବୁ କରିହେବ । ତାଙ୍କୁ କଂଗ୍ରେସର ଆଶ୍ରା ଦେବା ଉଚିତ ମନେହେଲା ।

ଏମିତି ସମୟରେ କୋରାପୁଟ ଜିଲ୍ଲାର ଅନ୍ୟତମ ପ୍ରସିଦ୍ଧନେତା ରାଧାମୋହନ ସାହୁ ବୈପାରୀଗୁଡ଼ା ଅଞ୍ଚଳକୁ କଂଗ୍ରେସର ବାର୍ତ୍ତା ପ୍ରଚାର କରିବାକୁ ଆସିଥିଲେ । ସେ ମାଲ-

କାନଗିର ସବଡ଼ିଭିଜନ ଦାୟିତ୍ୱରେ ଥିଲେ । ତାଙ୍କ ସଭାକୁ ଆଖପାଖ ଅଞ୍ଚଳର ମୁଖ୍ୟାଦାର ନାୟକ ଅ.ଡକ୍ସୁ ଡକାଯାଇଥିଲା । ଲକ୍ଷ୍ମଣ ନାୟକ ମଧ୍ୟ ଏହି ସଭାକୁ ଯାଇଥିଲେ । ମ୍ୟୁମରର ନୀଳକଣ୍ଠ ସାହଙ୍କ ଘରେ ସେ ଶୁଣିଲେ ରାଧାମୋହନ ସାହୁଙ୍କଠାରୁ କଂଗ୍ରେସର କଥା, ମହାତ୍ମାଗାନ୍ଧୀଙ୍କ କଥା, ସତ୍ୟଅହିଂସାର ବାଣୀ । ଲକ୍ଷ୍ମଣ ନାୟକ ତାଙ୍କ ଗାଁର ଆଉ ଜଣଙ୍କ ସହିତ ସେଦିନ କଂଗ୍ରେସର ଚାରିଅଣିଆ ସଭ୍ୟ ହେଲେ ।

ସେଦିନ ମ୍ୟୁମରରେ ଲକ୍ଷ୍ମଣ ନାୟକଙ୍କ ହୃଦ୍‌ବୋଧ ହେଲା ଯେ ଗାନ୍ଧୀ ବତେଇ-ଥିବା ମାର୍ଗରେ ଚାଲିଲେ ଆଉ ଦୁଃଖ ରହିବ ନାହିଁ, ଅତ୍ୟାଚାର ରହିବ ନାହିଁ, ଦରକାର ହେଲେ କର୍ମୀମାନେ ସରକାରକୁ ଅସହଯୋଗ କରିବେ । ନ୍ୟାୟ ପାଇଁ ଲଢ଼େଇ କରିବେ । ହିଂସା କରିବେ ନାହିଁ, ଶତ୍ରୁକୁ ହାତ ଉଠାଇବେ ନାହିଁ । ନିଜକୁ କଷ୍ଟଦେଇ ଶତ୍ରୁର ମନ ବଦଳାଇବା ପାଇଁ ଚେଷ୍ଟା କରିବେ । ଭଗବାନଙ୍କ ଉପରେ ବିଶ୍ୱାସ ରଖିବେ । ସବୁଦିନ ଦୁଇଓଳି ସୂତା କାଟିବେ । ଖଦୀ ବୁଣିବେ । ନିଜ ହାତରେ ନିଜକାମ କଲେ ସ୍ୱାଧୀନତା ଆସିବ ।

ସେଦିନ ପ୍ରଥମଥର ନୂଆହୋଇ କଂଗ୍ରେସର ଚାରିଅଣିଆ ସଭ୍ୟ ହୋଇଥିବା ଲକ୍ଷ୍ମଣ ନାୟକ ପୁରୁଣା କଂଗ୍ରେସକର୍ମୀଙ୍କ ସହିତ ରାମଧୂନ ଗାଇଲେ ସମବେତ କଣ୍ଠରେ— ରଘୁପତି ରାଘବ ରାଜାରାମ ପତିତପାବନ ସୀତାରାମ । କେମିତି ଏକ ପବିତ୍ର ଭାବରେ ତାଙ୍କ ହୃଦୟ ପୂରିଗଲା । ସେ ମନେକଲେ ସେ ଯେମିତି ବଦଳିଯାଉଛନ୍ତି ଆଉ ଏକ ନୂଆ ମଣିଷରେ ।

## ୭ । ନୂଆପୁଟ ତାଲିମ କେନ୍ଦ୍ର

ଯେଉଁ କଉତୁକର୍ମା ତିନିଜଣ କଂଗ୍ରେସକର୍ମୀଙ୍କ ନିଷ୍ଠାପର ଉଦ୍ୟମରେ ସାରା କୋରାପୁଟ ଜିଲ୍ଲାରେ କଂଗ୍ରେସର ବାର୍ତ୍ତା ପହଞ୍ଚିପାରିଥିଲା ସେମାନେ ହେଲେ ରାଧାକୃଷ୍ଣ ବିଶ୍ୱାସରାୟ, ରାଧାମୋହନ ସାହୁ ଓ ସଦାଶିବ ତ୍ରିପାଠୀ । ରାଧାକୃଷ୍ଣ ବିଶ୍ୱାସରାୟ କୋରାପୁଟ ଓ ରାୟଗଡ଼ା ଅଞ୍ଚଳ ପାଇଁ, ରାଧାମୋହନ ସାହୁ ଜୟପୁର ଓ ମାଲକାନଗିରି ଅଞ୍ଚଳ ପାଇଁ ଓ ସଦାଶିବ ତ୍ରିପାଠୀ ନବରଙ୍ଗପୁର ପାଇଁ ଦାୟିତ୍ୱ ନେଇଥିଲେ ।

ଗୋପବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ ଗାନ୍ଧୀସେବାସଂଘ ଦ୍ୱାରା ସାରା ଓଡ଼ିଶାରେ ଗାନ୍ଧୀଙ୍କ ସାମାଜିକ ଉନ୍ନତି ଓ ରଚନାତ୍ମକ କାର୍ଯ୍ୟ ଚଳାଇବା ପାଇଁ ଅନେକଗୁଡ଼ିଏ କେନ୍ଦ୍ର ଖୋଲାଯାଇଥିଲା । କଂଗ୍ରେସ କର୍ମୀମାନଙ୍କୁ ଏହି କେନ୍ଦ୍ରଗୁଡ଼ିକରେ କପାଚାଷ କରିବା, ସୂତା କାଟିବା, ଖଦୀ ବୁଣିବା ଆଦି କାମ ଶିକ୍ଷା ଦିଆଯାଉଥିଲା । ତା'ଛଡ଼ା କେନ୍ଦ୍ରଗୁଡ଼ିକରେ ଗାନ୍ଧୀ କହିଥିବା ଏକାଦଶବ୍ରତ ପାଳନକରିବା ଉପରେ ବେଶୀ ଜୋର୍‌ଦିଆଯାଉଥିଲା ।

ସେତେବେଳକୁ ରାଧାକୃଷ୍ଣ ବିଶ୍ୱାସରାୟ କୋରାପୁଟ ଜିଲ୍ଲା କଂଗ୍ରେସ ସଭାପତି । ତାଙ୍କ ଉଦ୍ୟମରେ ୧୯୩୭ ମସିହା ଡିସେମ୍ବର ମାସରେ ଜୟପୁରଠାରୁ ୭ ମାଇଲ ଦୂରରେ ଥିବା ନୂଆପୁଟଠାରେ ଗୋଟିଏ କଂଗ୍ରେସ ତାଲିମ କେନ୍ଦ୍ର ଖୋଲିଲେ । ଏଥିରେ ପ୍ରଥମ ଦଫାରେ ସାରା କୋରାପୁଟ ଜିଲ୍ଲାରୁ ୩୫୦ ଜଣ କଂଗ୍ରେସକର୍ମୀଙ୍କୁ ତାଲିମ ଦେବା ପାଇଁ ସ୍ଥିରକରାଗଲା । ଏହି ୩୫୦ ଜଣଙ୍କ ମଧ୍ୟରୁ ଲକ୍ଷ୍ମଣ ନାୟକ ଜଣେ ଥିଲେ । ଏହି କେନ୍ଦ୍ରକୁ ଗୋପବନ୍ଧୁ ଚୌଧୁରୀ ଉଦଘାଟନ କରିଥିଲେ । ଓଡ଼ିଶାର ବହୁ ପ୍ରସିଦ୍ଧ ନେତା ଏହି କେନ୍ଦ୍ର ପରିଦର୍ଶନରେ ଆସିଥିଲେ । ଓଡ଼ିଶାର ପ୍ରଧାନମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସ ଏହି କେନ୍ଦ୍ର ପାଇଁ ବିଶେଷ ସହଯୋଗ କରିଥିଲେ । ଆଚାର୍ଯ୍ୟ ହରିହର ଦାସ, ଗୋକୁଳାନନ୍ଦ ମହାନ୍ତି, ଗୋଦାବରୀଶ ମିଶ୍ର କେତେ ଦିନ ଏହି କେନ୍ଦ୍ର ପରିଚାଳନା ଦାୟିତ୍ୱରେ ଥିଲେ । ଏହି ମହାପୁରୁଷଙ୍କ ପାଦପଡ଼ି ଏହି କେନ୍ଦ୍ର ଏକ ପୁଣ୍ୟ ତୀର୍ଥସ୍ଥାନ ହୋଇଗଲା ।

ଏହି କେନ୍ଦ୍ରରେ ଛଅମାସ ରହି ଲକ୍ଷ୍ମଣ ନାୟକ କର୍ମୀଜୀବନର ଶୃଙ୍ଖଳା କ'ଣ ଶିଖିଲେ । ଅହିଂସା ଓ ସଂଯମ ଶିକ୍ଷାକଲେ । ଭଗବାନଙ୍କ ପ୍ରତି ବିଶ୍ୱାସ ରଖିବା, ଅହିଂସାବ୍ରତ ପାଳନ କରିବା, ନିଶାନିବାରଣ କରିବା, ବ୍ରହ୍ମଚର୍ଯ୍ୟ ପାଳନ କରିବା, ଶରୀର ଶ୍ରମ କରିବା, ଛୁଆଁ ଅଛୁଆଁ ଭେଦଭାବ ନରଖିବା, ଜାତିଧର୍ମବର୍ଣ୍ଣନିର୍ବିଶେଷରେ ସମସ୍ତଙ୍କ ସହିତ ମିଶିବା, ନିର୍ଭୀକ ଓ ସତ୍ୟବାଦୀ ହେବା, ସ୍ୱଦେଶୀ ଜିନିଷ ବ୍ୟବହାର କରିବା ବାଧ୍ୟତାମୂଳକ ଥିଲା ।

ଏହି କେନ୍ଦ୍ରର ତାଲିମ ଲକ୍ଷ୍ମଣ ନାୟକଙ୍କ ମନକୁ ଖୁବ୍ ବଦଳାଇଦେଇଥିଲା । ସେ ହୋଇଗଲେ ଗାନ୍ଧୀଙ୍କ ଆଦର୍ଶରେ ଅନୁପ୍ରାଣିତ ।

ନୂଆପୁଟ କେନ୍ଦ୍ରକୁ ଆସିଥିବା କର୍ମୀମାନେ ଗ୍ରାମସଙ୍ଗଠନ, ଗାଁରେ ଶିକ୍ଷାର ପ୍ରଚାର, ଚରଖା ଚଳାଣ ଓ ମରାମତି, ତନ୍ତରେ ଲୁଗାବୁଣିବା ଉପରେ ଶିକ୍ଷା ପାଇଥିଲେ । କୋରାପୁଟ ଜିଲ୍ଲାର ପ୍ରତ୍ୟେକ ଗଳିକନ୍ଦିରୁ କର୍ମୀମାନେ ଆସିଥିବାରୁ ସେମାନଙ୍କ ଭିତରେ ବନ୍ଧୁଭାବ ବଢ଼ିଲା । ସମସ୍ତଙ୍କର ଗୋଟିଏ ଲକ୍ଷ୍ୟ ହେଲା—ଭାରତକୁ ଅହିଂସା ଉପାୟରେ ସ୍ୱାଧୀନ କରିବାକୁ ହେବ । ସକାଳୁ ସନ୍ଧ୍ୟାଏ କର୍ମବ୍ୟସ୍ତତା ଭିତରେ ଲକ୍ଷ୍ମଣ ନାୟକ ବହୁତ କଥା ଶିଖିଲେ । ସେ ଜାଣିଲେ ଲୋକସମ୍ପର୍କ କେମିତି ରଖିବାକୁ ହୁଏ । ସେ ହୋଇଗଲେ ଧୀର, ଶାନ୍ତ ଓ ଗମ୍ଭୀର ।

ନୂଆପୁଟ ତାଲିମକେନ୍ଦ୍ରରୁ ଫେରି ସେ ଦିନରାତି କଂଗ୍ରେସ କାମ କଲେ । ଗାଁର ମଙ୍ଗୁଳୁ ପୂଜାରୀ, ବନସିଙ୍ଗା, ବଳରାମ ପୂଜାରୀ ହେଲେ ତାଙ୍କର ସବୁବେଳର ସାଥୀ । ଗାଁରେ ଗାଁରେ ଚରଖା, ସୂତା କଟା, ରାମଧୁନ, ରାତିରେ ପାଠପଢ଼ା ଓ ଅକ୍ଷର ଶିକ୍ଷା । ଗାଁଲୋକଙ୍କର ପୂର୍ବ ଅଭ୍ୟାସମାନ ବଦଳିବାକୁ ଲାଗିଲା । ଗାଁର ପରିମଳ ସୁନ୍ଦର ହେଲା । ତାଙ୍କ ଚେଷ୍ଟାରେ ତେନ୍ତୁଳିଗୁମ୍ମା ଓ ପାଖଆଖ ଅଞ୍ଚଳରେ ଦୁଇହଜାର ଚରଖା ସଞ୍ଜ ସକାଳେ କାମକଲା । ଲୋକେ ଖଦୀ ବୁଣି ଖଦଡ଼ଲୁଗା ପିନ୍ଧିଲେ । ଚରଖାରେ

ସୂତା କାଟିଲାବେଳେ, ନବକୃଷ୍ଣମନରେ ଲୁଗା ବୁଣିଲାବେଳେ ସେମାନେ ଚର୍ଚ୍ଚାକଲେ ଦେଶର କଥା, ସ୍ୱାଧୀନତାର କଥା ।

ଗାଁଗାଁରେ କପାଗୃଷ ହେଲା । ଖଦଡ଼ ଲୁଗା ବିକିବା ପାଇଁ ଜୟପୁର ସହରରେ ଖଦଡ଼ ଦୋକାନ ଖୋଲିଲା । ଲୋକେ ଦୁଇପଇସା ପାଇଲେ—ଆତ୍ମନିର୍ଭରଶୀଳ ହେଲେ ।

ଖଦଡ଼ର ପ୍ରସାର ଓ ଅହିଂସାବ୍ରତ ପାଳନ ଏହି ଦୁଇ ମହାନ୍ ମନ୍ତ୍ରକୁ ନେଇ ଲକ୍ଷ୍ମଣ ନାୟକ ବୁଲିଲେ ଗାଁଗଣ୍ଡା, ପଦରଗୁଡ଼ା, ପାଳି । ସବୁଠି ସେଇ ଗାନ୍ଧୀଙ୍କ କଥା—ଏକୁଟିଆ ଲଢ଼ିଲେ ହାରିଯିବା । ସମସ୍ତେ ମିଶିଲେ ଜିଣିହେବ । ଯୋଡ଼ାକୁ ଯୋଡ଼ା ସରି ନୁହଁ । ଅହିଂସା ପରମଧର୍ମ । ଅହିଂସାର ବଳରେ ଯିଏ ବଳୀ ତାକୁ କେହି ତା ଚଲାପଥରୁ ହଟାଇପାରିବେନାହିଁ । ଗାନ୍ଧୀଙ୍କୁ ଯିଏ ଦେଖିନଥିଲେ, ହେଲେ ସେ ଗାନ୍ଧୀ ଦେଖାଇବା ବାଟରେ ଚାଲି ଲୋକମାନଙ୍କ ମନରେ ସେ ହୋଇଗଲେ ମାଲକାନଗିରିର ଗାନ୍ଧୀ ।

ଠିକ୍ ଏଇ ସମୟରେ ଭାରତ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଯୋଗଦେଲା ବୋଲି ଇଂଲଣ୍ଡ ସରକାର ଘୋଷଣା କରିଦେଲା ।

## ୮ । ସତ୍ୟାଗ୍ରହ

ମହାତ୍ମାଙ୍କ ଡାକରାରେ ସାରା ଭାରତରେ ଚହଳ ପଡ଼ିଗଲା । ସ୍କୁଲ, କଲେଜର ଛାତ୍ରମାନେ ପାଠପଢ଼ା ଛାଡ଼ି ଆନ୍ଦୋଳନରେ ମାତିଲେ । ସେତେବେଳକୁ ଜୟପୁର ହାଇସ୍କୁଲର ବୟସ ୨୧ ବର୍ଷ । ଏହି ସ୍କୁଲ ୧୯୧୦ରେ ବସିଥିଲା ।

ଏହି ସ୍କୁଲର ପିଲାମାନେ ସ୍ୱଦେଶୀ ଡାକରାରେ ଉଦ୍‌ବୁଦ୍ଧ ହେଲେ । ପାଠପଢ଼ା ଛାଡ଼ିଦେଲେ । ସେତେବେଳକୁ ଏ ହାଇସ୍କୁଲର ପ୍ରଧାନଶିକ୍ଷକ ଥିଲେ ହନୁମନ୍ତ ରାଓ, ପଣ୍ଡିତ ଗୋବିନ୍ଦ ସାହୁ, ଶିକ୍ଷକ ନବୀନ ଚନ୍ଦ୍ର ପାଢ଼ି । ସେତେବେଳେ ଦେଶସାରା ଆନ୍ଦୋଳନ । ଜୟପୁର ହାଇସ୍କୁଲର ସ୍ୱାଧୀନଚେତା ଛାତ୍ରମାନେ ଯେମିତିକି ଗୋପାଳ-କୃଷ୍ଣ ପଟ୍ଟନାୟକ, କୃଷ୍ଣଚନ୍ଦ୍ର ସାହୁ ପାଢ଼ି, କୃଷ୍ଣଚନ୍ଦ୍ର ବଡ଼ପୋସ୍ତୀ, ମଧୁସୂଦନ ଦଣ୍ଡସେନା, ରାଧାକୃଷ୍ଣ ଗୌଡ଼, ପୂର୍ଣ୍ଣଚନ୍ଦ୍ର ମାଝୀ, ଜଗନ୍ନାଥ ପଣ୍ଡା, ଦାଶରଥୀ ମିଶ୍ର ଆନ୍ଦୋଳନରେ ଯୋଗଦେଲେ । ଏହା ଜାଣିପାରି ପୋଲିସ ଏମାନଙ୍କୁ ରିମାଣ୍ଡରେ ରଖିଲେ । ବିଚାର ହେଲା । ହିଂସାକାଣ୍ଡ ଅଭିଯୋଗରେ ଦୋଷୀ ସାବ୍ୟସ୍ତ ହୋଇ କୃଷ୍ଣଚନ୍ଦ୍ର ସାହୁଙ୍କୁ ଜେଲ ଦଣ୍ଡ ହେଲା ।

ଏହି କୃଷ୍ଣଚନ୍ଦ୍ର ବଡ଼ପୋସ୍ତୀ ୧୯୩୧ ମସିହାରେ ରାଧାମୋହନ ସାହୁଙ୍କ ପ୍ରେରଣାରେ ଡେଙ୍ଗୁଲିଗୁମ୍ମା ଅଞ୍ଚଳରେ ଲୋକଙ୍କୁ ପାଠ ପଢ଼ାଇବା ପାଇଁ ଗଲେ । ଜୟପୁରରୁ

ବୈପାରୀଗୁଡ଼ା ଯାଇ ବଣଜଙ୍ଗଲ ପାରହୋଇ ପାଞ୍ଚଦିନ ପରେ ତେନ୍ଦୁଳିଗୁମ୍ମାରେ ଲକ୍ଷ୍ମଣ ନାୟକଙ୍କ ଘରେ ପହଞ୍ଚିଲେ । ୧୦-୧୧ ବର୍ଷର ପିଲା ହେଲେ ମଧ୍ୟ କଂଗ୍ରେସର କାମ କରିବା ପାଇଁ ତାଙ୍କ ମନରେ ଅସୀମ ଆଗ୍ରହ । ଚାଲେହେଲେ ଡରଭୟ ନାହିଁ । ସେତେବେଳକୁ ଲକ୍ଷ୍ମଣ ନାୟକ ମାଥିଲି-ମାଲକାନଗିରି ପ୍ରାଥମିକ କଂଗ୍ରେସ କମିଟିର ସଭାପତି ।

କୃଷ୍ଣଚନ୍ଦ୍ର ପ୍ରଥମେ ତାଙ୍କୁ ଦେଖିଲେ ତାଙ୍କ ଘର ଅଗଣାରେ, ଖୋଲା ମଣ୍ଡପରେ ଦଶ ବାରଜଣଙ୍କ ସହିତ ବସି ଚରଖାରେ ସୂତା କାଟୁଛନ୍ତି । କୃଷ୍ଣଚନ୍ଦ୍ର ତାଙ୍କୁ ନମସ୍କାର କଲେ । କୃଷ୍ଣଚନ୍ଦ୍ରଙ୍କ ଆସିବା କଥା ଲକ୍ଷ୍ମଣ ନାୟକ ଆଗରୁ ଜାଣିଥିଲେ । ସେ ତାଙ୍କୁ ସାହସ ବଢ଼ାଇଲେ । ବଣଜଙ୍ଗଲକଥା କହିଲେ । ନଡରିବାକୁ ବୁଝାଇଲେ । ସେହିଦିନ ଠାରୁ କୃଷ୍ଣଚନ୍ଦ୍ର ଲକ୍ଷ୍ମଣ ନାୟକଙ୍କର ସବୁକାମ ଦେଖିଲେ । ନିଜ ପାରିଲା ଏତିକି କାମ କଲେ ।

୧୯୩୯ ବେଳକୁ ଲକ୍ଷ୍ମଣ ନାୟକଙ୍କୁ ୪୦ ବର୍ଷ ବୟସ । ସେତେବେଳେ ସେ ଦେଖିବାକୁ କେମିତି ଥିଲେ ସେ ବିଷୟରେ କୃଷ୍ଣଚନ୍ଦ୍ର କହନ୍ତି—ଡେଙ୍ଗା ଚୌଡ଼ା, ଛେଚ୍ରି-ପିଟା ମଣିଷଟାଏ । ଦେଖିବାକୁ ପକ୍କାଏ ମଣିଷ ଭଳି । ଉଚ୍ଚତା ଛ'ଫୁଟ ପାଖାପାଖି । ବଳଦେଲା ପରି ହାତଗୋଡ଼ । ଗୋଡ଼ପେଣ୍ଡା ଫୁଲିଉଠିଛି । ତମ୍ବାପରି ମାଟିଆ ରଙ୍ଗର ଦେହ । ଲମ୍ବାହାତ ଓ ମୋଟା ମୋଟା ଆଙ୍ଗୁଠି । ଗ୍ରେଟିଆ ବେକଟିଏ—ସତେ ଯେମିତି ଦେହ ଉପରେ ସିଧା ମୁଣ୍ଡଟି ଥୁଆହୋଇଛି । ମୁଣ୍ଡ ଓ କାନ୍ଧ ମିଶାମିଶି । ଓସାର ପାଟି । ଅଳ୍ପମୋଟା ଓଠ । ଫୁଲ୍‌କା ଫୁଲ୍‌କା ଗାଲ । ଡେଙ୍ଗା ଓ ସାମାନ୍ୟ ଚେପ୍‌ଟା ନାକ । ତା ତଳେ ଅଳ୍ପ ଅଥଚ ଘଞ୍ଚ ନିଶ । ଅଳ୍ପ ପାଚିଆସୁଛି । ମୁହଁ ତୁଳନାରେ ଖୁବ୍ ବେଶୀ ଲମ୍ବା କାନ । ଚକ୍ ଚକ୍ କରୁଥିବା ଗ୍ରେଟ କପାଳ । ତା ତଳେ ଗ୍ରେଟ ଗ୍ରେଟ ଆଖି । ମୁଣ୍ଡରେ ପତଳା କଦଁବ୍ ବାଳ । ପ୍ରଶସ୍ତ ମୁହଁ ।

ଏମିତି ଥିଲେ ଲକ୍ଷ୍ମଣ ନାୟକ—ପ୍ରକୃତ ଅର୍ଥରେ ମାଲକାନଗିରିର ନାୟକ । ନୂଆପୁଟରେ ତିନିମାସକାଳ ନିରବଚ୍ଛିନ୍ନ ତାଲିମ ପାଇ ସେ ପାଲଟିଗଲେ ଗାନ୍ଧୀଙ୍କର ବଡ଼ଭକ୍ତ । ସେ ମାଂସଖାଇବା ଛାଡ଼ିଦେଲେ । ନିରାମିଷାଶୀ ହୋଇଗଲେ । ଗାଁର ପୂଜାରୀ ହୋଇ ବି ଗୁଡ଼ିରେ ବଳି ଦେଲେନାହିଁ । ଯୁଗଯୁଗର ଆଦିବାସୀ ଅନ୍ଧବିଶ୍ୱାସକୁ ବଦଳାଇଦେଲେ । ଲୋକେ ତାଙ୍କ କଥା ରଖିଲେ । ମାତାଠାକୁରାଣୀ ଫୁଲପଞ୍ଚଫଳରେ ସନ୍ତୁଷ୍ଟ ହେଲେ । ସେ ଅହିଂସାମାର୍ଗୀ ହୋଇଗଲେ ସବୁଦିନପାଇଁ ।

ଏମିତି ଏକ ସମୟରେ ବିଲାତର ପ୍ରଧାନମନ୍ତ୍ରୀ ସାର ଉଇନ୍‌ଷ୍ଟନ୍ ଚର୍ଚ୍ଚିଲ ଦ୍ୱିତୀୟ ପୃଥିବୀ ଯୁଦ୍ଧରେ ଭାରତ ଯୋଗଦେଲା ବୋଲି ଘୋଷଣା କଲେ । ସାରା ଭାରତରୁ ଯୁଦ୍ଧ ଲଢ଼ିବା ପାଇଁ ଲୋକ ଆଉ ଟଙ୍କା ସଂଗ୍ରହ କରିବା ପାଇଁ ଆଦେଶ ଦେଲେ । ପ୍ରଥମ ବିଶ୍ୱଯୁଦ୍ଧରେ ସାହାଯ୍ୟ କଲେ ଭାରତ ସ୍ୱାଧୀନତା ପାଇବ ବୋଲି ବିଲାତ ସରକାର

କଥା ଦେଇଥିଲେ, ଯୁଦ୍ଧ ସରିଲାପରେ କଥା ରଖିଲେନାହିଁ । ଏଥର ବିଲାତ ସରକାର ଭାରତର ଲୋକ ଆଉ କଂଗ୍ରେସକୁ ନ ପଚାରି ସବୁ ଲୋକଙ୍କୁ ଯୁଦ୍ଧମୁହଁକୁ ଠେଲିଦେଲେ ।

ଏମିତି ଏକତରଫା ନିଷ୍ପତ୍ତି ମାନିବା ପାଇଁ ମହାତ୍ମା ଓ ନେତାମାନେ ରାଜିହେଲେ ନାହିଁ । ଗାନ୍ଧୀ କହିଲେ ଆଉ ଇଂରେଜ ସରକାର ସହିତ କଥାବାର୍ତ୍ତା କରି ଲାଭହେବ ନାହିଁ । ସେ ଉପାୟ ବତାଇଲେ—କଂଗ୍ରେସ କର୍ମୀମାନେ ଅହିଂସାରେ ଏହି ନିଷ୍ପତ୍ତିର ପ୍ରତିବାଦ ଜଣାଇବେ । ନିଜ ଇଚ୍ଛାରେ ଜେଲଯିବେ । ଯେତେ ବେଶୀ ଲୋକ ଜେଲ ଯିବେ, ଗୋରା ସରକାର ସେତେ ବେଶୀ ବାଧ୍ୟହେବ ସ୍ୱାଧୀନତା ଦେବାପାଇଁ । ଏଣୁ ସେ ଲୋକମାନଙ୍କୁ ଯୁଦ୍ଧଚାନ୍ଦା ନ ଦେବାକୁ, ସରକାର କାମରେ ସାହାଯ୍ୟ ନକରିବାକୁ ଓ ନିଜ ଇଚ୍ଛାରେ ପୂର୍ବରୁ ସରକାରଙ୍କୁ ଜଣାଇ କାରାବରଣ କରିବାକୁ କହିଲେ । ଗାନ୍ଧୀଙ୍କର ଏହି ନିଷ୍ପତ୍ତି ସାରା ଦେଶରେ ଚହଳ ପକାଇଦେଲା । ଗାନ୍ଧିଜୀ ନିଜଇଚ୍ଛାରେ ଜେଲଯିବା କର୍ମୀମାନଙ୍କ ତାଲିକା କରି ପଠାଇବା ପାଇଁ ନିର୍ଦ୍ଦେଶ ଦେଲେ । ଏହି ଆନ୍ଦୋଳନକୁ ବ୍ୟକ୍ତିଗତ ଆଇନ ଅମାନ୍ୟ ଆନ୍ଦୋଳନ ବୋଲି କୁହାଗଲା । ସତ୍ୟାଗ୍ରହୀମାନେ ବ୍ୟକ୍ତିଗତ ଭାବେ ଏହା ଘୋଷଣାକରି ଜେଲଯିବେ ବୋଲି ଠିକ୍ କରାଗଲା । ୧୯୪୦ ମସିହା ନଭେମ୍ବର ମାସରେ ଏହି ସତ୍ୟାଗ୍ରହ ଆରମ୍ଭ ହେଲା ଏବଂ ବିନୋବାଭାବେ ପ୍ରଥମ ସତ୍ୟାଗ୍ରହୀଭାବେ ଜେଲ ଗଲେ । ପରେ ପରେ ଦ୍ୱିତୀୟ ସତ୍ୟାଗ୍ରହୀ ହେଲେ ପଣ୍ଡିତ ନେହେରୁ ।

ଓଡ଼ିଶାରୁ ପ୍ରାଣକୃଷ୍ଣ ପଡ଼ିହାରୀଙ୍କ ନେତୃତ୍ୱରେ ପ୍ରଥମ ଦଫାରେ ୧୨ ଜଣ ସତ୍ୟାଗ୍ରହୀଙ୍କୁ ବଛାଗଲା ଏବଂ ଏମାନେ ୧-୧୨-୧୯୪୦ରେ ସ୍ୱେଚ୍ଛାରେ ଜେଲ ବରଣ କଲେ । ଦ୍ୱିତୀୟ ଦଫାରେ ଓଡ଼ିଶାର ୫୦୦ ଜଣ କର୍ମୀଙ୍କୁ ସତ୍ୟାଗ୍ରହ କରିବା ପାଇଁ ମନୋନୀତ କରାଗଲା । ତା ଭିତରୁ ବହୁସଂଖ୍ୟାରେ କୋରାପୁଟ ଜିଲ୍ଲାର ଅଧିବାସୀ ଥିଲେ ।

କୋରାପୁଟ ଜିଲ୍ଲାର ଜୟପୁର ଅଞ୍ଚଳରୁ ରାଧାକୃଷ୍ଣ ବିଶ୍ୱାସରାୟ, ରାଧାମୋହନ ସାହୁ ଓ ନୀଳକଣ୍ଠ ପାଢ଼ୀ, ନବରଙ୍ଗପୁର ଅଞ୍ଚଳରୁ ସଦାଶିବ ତ୍ରିପାଠୀ, ସଦାନନ୍ଦ ମହାନ୍ତି ଓ ଲକ୍ଷ୍ମୀଚନ୍ଦ୍ର ଦାସ, କୋଟପାଡ଼ ଅଞ୍ଚଳରୁ କପିଳ ପାଢ଼ୀ, ସତ୍ୟନାରାୟଣ ମାଝୀ ତଥା ମାତିଲି ଅଞ୍ଚଳରୁ ଲକ୍ଷ୍ମଣ ନାୟକ ସତ୍ୟାଗ୍ରହ କରିବେ ବୋଲି ସ୍ଥିରହେଲା । ୧୯୪୦ ମସିହା ଡିସେମ୍ବର ମାସରେ ଲକ୍ଷ୍ମଣ ନାୟକ ରାମଗିରିଫାଣ୍ଡି ଅଞ୍ଚଳରେ ଏବଂ ୧୯୪୧ରେ ଅନ୍ୟ ସାତଜଣ କର୍ମୀଙ୍କ ସହିତ ମାତିଲି ଥାନା ଅଞ୍ଚଳରେ ସତ୍ୟାଗ୍ରହ କରି ସାଧାରଣ ସଭାମାନଙ୍କରେ ଯୁଦ୍ଧଚାନ୍ଦା ନଦେବା ପାଇଁ, ଗୋରା ସରକାର କର୍ମଚାରୀମାନଙ୍କୁ ସାହାଯ୍ୟ ନ କରିବା ପାଇଁ ଉଦ୍‌ବୋଧନ ଦେଲେ । ଫଳରେ ପୋଲିସ ତାଙ୍କୁ ଗିରଫକରି, ବିଚାରଣା ପରେ ନଅମାସ ସଶ୍ରମ କାରାଦଣ୍ଡ ଭୋଗିବା ପାଇଁ କୋରାପୁଟ ଜେଲକୁ ପଠାଇଦେଲେ । ଏହି ସମୟ ଭିତରେ କୋରାପୁଟ ଜିଲ୍ଲାର [illegible]ରୁ ପ୍ରାୟ ୫୦୦ ସତ୍ୟାଗ୍ରହୀ ଓ ଫରାରୀଙ୍କୁ ଜେଲକୁ ଅଣାଯାଇଥିଲା

# ୪ । କେମିତି ସେ ଯମପୁର : କୋରାପୁଟ ଜେଲ୍

ଘଡ଼ଘଡ଼ିରେ ଉଚ୍ଚ ଉଚ୍ଚ ପାହାଡ଼ । ଘଞ୍ଚ ଜଙ୍ଗଲ । ଉଚ୍ଚ ଉଚ୍ଚ ଗଛ । ଗଛରେ ଗୁଡ଼େଇହୋଇଛି ଶିଆଳୀଲଟା । ଭିତରେ ଅନ୍ଧାର ଦିଶୁଛି ବଣ । ସୂର୍ଯ୍ୟ ଏଠି ଦିଶିଲା-ବେଳକୁ ଦିନ ଦଶଟା । ବର୍ଷକୁ ଛ'ମାସ ବର୍ଷା, ଛ'ମାସ ଶୀତ । ବର୍ଷାଦିନେ ପାଣିସୁଅମାନ ପାହାଡ଼ ଡେଇଁଆସେ । ମାଟି ତାଡ଼ିନିଏ । ଶୀତଦିନେ କୁହୁଡ଼ି ଘୋଟିଯାଏ । ଶୀତରେ ମଣିଷ ଥରିଯାଏ । ସଞ୍ଜହେଲେ ଭାଲୁଆର ହୁକେ ହୋ ଶୁଭେ । ରାତି ହେଲେ ଶୁଭେ ବାଘର ହେଣ୍ଟାଳ । ସେଇଁଆଡେ ଯାଅ ଘାଟି ଡେଇଁ ଯିବାକୁ ପଡ଼େ । ସାଲୁରୁବାଟେ ଆସିଲେ ସାଲୁରୁଘାଟି । ରାୟଗଡ଼ା ବାଟେ ଆସିଲେ ଗୁମ୍ମା ଘାଟି । ଜୟପୁରବାଟୁ ଗଲେ ଘାଟଗୁମର । ଦେଓମାଳି । ଏମିତ ଘାଟି, ପର୍ବତ, ବଣ, ସ୍ରୋତ ବଢ଼ନାଳ ଭିତରେ ୧୯୪୧ ମସିହା ବେଳକୁ କୋରାପୁଟ ଜିଲ୍ଲାର ସଦରମହକୁମା କୋରାପୁଟ । ଗୋରା କର୍ମଚାରୀଙ୍କ ପାଇଁ ଶୈଳନିବାସ । କଟକ ପୁରୀଆଡ଼ୁ ଆସିଥିବା ଲୋକଙ୍କ ପାଇଁ ଯମପୁର । ଏଠା ପାଣି ପିଇଲେ ହୁଏ କଳାଜର, ଠେଙ୍ଗଜର, ମେଲେରିଆ ।

କୁହାଯାଏ ଏହି ଅଞ୍ଚଳରେ ବହୁତ କୋରାପୁଟିଆ ଝାଟି (ବୁଦା) ଥିବାରୁ ଏହାର ନାମ କୋରାପୁଟ ହେଲା । କେହି କେହି ବଡ଼ ବୁଢ଼ା କହନ୍ତି ଦିନେ କୁଟୁଣୀମାଳ ପର୍ବତର କୌଣସି ଗୁମ୍ଫାଭିତରେ ବସିଥିବା ଆଦିବାସୀଟିଏ ଦେଖିଲା ଆକାଶକୁ ଘୋଡ଼ାଇପକାଇଲା କଳାମେଘ, ତା'ପରେ ବିଜୁଳି ଓ ଘଡ଼ଘଡ଼ିରେ ଝଲସିଗଲା ଘରଦିଗ, ଦୁଲୁକିଗଲା ମାଟି । କିଛିସମୟ ପରେ ଅବଶ୍ରାନ୍ତଭାବେ ଆକାଶ ଅଜାଡ଼ିଦେଇଗଲା କୁଆପଥର । ହଠାତ୍ ବନବାସୀ ମୁହଁରୁ ବାହାରିପଡ଼ିଲା 'କରାପୁଟ୍' ବା କୁଆପଥରର ବର୍ଷା ଆଉ ଏମିତ କାଳକ୍ରମେ ଏହି ଅଞ୍ଚଳର ନାମ ହୋଇଗଲା କରାପୁଟି—କରାପୁଟରୁ କୋରାପୁଟ । ଆଉ କେହି କେହି କହନ୍ତି କୌଣସି ଖରା ବା ଖଡ଼ା ( ଠେଙ୍ଗୁଆଗୋଷ୍ଠୀ ) ରଜା ଏ ଗାଁ ବସାଇଥିବାରୁ ଏହାର ନାମହେଲା କୋରାପୁଟ । ଏମିତ ବହୁ କିଂବଦନ୍ତୀ କୋରାପୁଟକୁ ନେଇ ଶୁଣିବାକୁ ମିଳେ ।

ଏହି କୋରାପୁଟରେ ଶାନ୍ତିଶୃଙ୍ଖଳା ରକ୍ଷାକରି ଆଇନଅମାନ୍ୟକାରୀଙ୍କୁ ଦଣ୍ଡଦେବା ପାଇଁ ଗୋରା ସରକାର ତିଆରି କରିଥିଲେ ଜେଲଘର—ନାଆଁ ତାର କୋରାପୁଟ ଜେଲ । ନଅ ଏକର ଜମିରେ ତିଆରି କୋରାପୁଟ ଜେଲ । ଏହି ଜେଲରେ ତିନି ସାଉଡ଼ି (ଲମ୍ବାଘର) ଘର ତିଆରି ହୋଇଥିଲା । ଜେଲରେ ତିନିଶହ ବନ୍ଦୀଙ୍କୁ ରଖିବାର ବ୍ୟବସ୍ଥା ଥିଲା ।

ଯେତେବେଳେ ସତ୍ୟାଗ୍ରହୀମାନେ ୧୯୪୧ରେ ସତ୍ୟାଗ୍ରହ କଲେ ସେତେବେଳେ ଗୁଣୁପୁର ଅଞ୍ଚଳରୁ ବିଶ୍ୱନାଥ ପଟ୍ଟନାୟକ ଓ ବହୁ ସହର କଂଗ୍ରେସକର୍ମୀ, ରାୟଗଡ଼ା, ଲକ୍ଷ୍ମୀପୁର ଅଞ୍ଚଳରୁ ବହୁଲୋକ, ଜୟପୁର, ପଟାଙ୍ଗି, ନନ୍ଦପୁର, ସେମିଳିଗୁଡ଼ାରୁ ବହୁକର୍ମୀ,

ନବରଙ୍ଗପୁରରୁ ସଦାନନ୍ଦ ମହାନ୍ତି, ଆନ୍ନାଜୀରାଓ, ଚୈତନ ମାଝିଆ, ଆନନ୍ଦ ବେହେରା, ଲକ୍ଷ୍ମୀଚନ୍ଦ୍ର ଦାସ, ସନୁ ମାଝୀ, ରାଇଧର ଜାନୀ, ମହମ୍ମଦ ବାଙ୍ଗ, ରବସିଂ ମାଝୀ, କୋଟପାଡର ଜମିଲ ପାଣ୍ଡ, ସୂର୍ଯ୍ୟନାରାୟଣ ପାଣ୍ଡ ଏବଂ ମାତଲମୁଠାରୁ ଲକ୍ଷ୍ମଣ ନାୟକ, ବଳରାମ ପୂଜାରୀ, ନକୁଳ ମାଡକାମୀ ଆଦି ବହୁ କର୍ମୀଙ୍କୁ ଗିରଫକରି ଏଠି ଜେଲ୍‌ରେ ଅଟକ ରଖାଗଲା ।

୧୧-୧-୧୯୪୧ ତାରିଖ ଦିନ ୧୧ଟାରେ ଲକ୍ଷ୍ମଣ ନାୟକ ମାଥିଲି ଥାନାରୁ ଜୟପୁର ଦେଇ କୋରାପୁଟ ଜେଲରେ ପହଞ୍ଚିଲେ । ତାଙ୍କୁ କୋରାପୁଟ ଜିଲ୍ଲା ଡେପୁଟି ମେଜେଷ୍ଟ୍ରି ଅଫିସର ଓ ମାଜିଷ୍ଟ୍ରେଟ ରାଜଦ୍ରୋହ ଅପରାଧରେ ୯ ମାସ ସଶ୍ରମ କାରାଦଣ୍ଡ ଓ ଟ ୩୦୦/- ଜୋରିମାନା କରିଥିଲେ । ସେତେବେଳକୁ କୋରାପୁଟର ଜେଲ୍‌ରେ ଥିଲେ କୁଳମଣି ଦାସ, ଅତ୍ୟାଚାରର ପ୍ରତିମୂର୍ତ୍ତି, ପଣ୍ଡୁଠାରୁ ହିଂସ୍ର । ଆଦିବାସୀ ବୋଇଲେ ସେ ରକ୍ତଗୁହଳ ଗ୍ରେବାଉଥିଲେ । ଜେଲ ଭିତରେ ୩୦୦ ବନ୍ଦୀଙ୍କ ଜାଗାରେ ରଖାଗଲା ୮୫୦ ଜଣଙ୍କୁ । କୁଳୁଡ଼ାକ୍ତର, ମଣିଷମାରୁ ଓ ଦେଶପ୍ରେମୀ ସ୍ୱାଧୀନତା ସଂଗ୍ରାମୀଙ୍କ ମଧ୍ୟରେ ସେ କିଛି ପାର୍ଥକ୍ୟ ଦେଖିପାରୁନଥିଲେ । ସମସ୍ତେ ତାଙ୍କ ଆଖିରେ ଚୋର, ବଦମାସ, ଖଣ୍ଡ । ସବୁଠୁ ବଡ଼ଶତ୍ରୁ ଏଇ ସତ୍ୟାଗ୍ରହୀମାନେ ଯେଉଁମାନେ ଲୋକମାନଙ୍କୁ ମତେଇ ସେମାନଙ୍କ ଦାନାପାଣି ମାରୁଛନ୍ତି, ଏଣୁ ଏମାନେ ଭୀଷଣ ଦଣ୍ଡପାଇବାର ଯୋଗ୍ୟ ।

ସକାଳ ଛଅଟାରୁ ସନ୍ଧ୍ୟା ଛଅଟାଯାଏ ହାଡ଼ଭଙ୍ଗା ପରିଶ୍ରମ । ଲକ୍ଷ୍ମଣ ନାୟକଙ୍କୁ କାମ ଦିଆଯାଇଥିଲା ଦିନସାରା ଚକଚଲାଇ କୂଅରୁ ପାଣି ବାହାରକରିବା ଏବଂ ପରିବା ପଟାଳରେ ପାଣିଦେବା । ହାତଗୋଡ଼ରେ ବେଡ଼ି ଦେଇ ସେଇ ବନ୍ଧାହାତରେ ଚକ ଚଲାଇବା ଯେ କେତେ କଷ୍ଟକର—ତଥାପି ନିର୍ବିକାର ଚିତ୍ତରେ ଲକ୍ଷ୍ମଣ ନାୟକ ସେ କଷ୍ଟ ସହୁଥିଲେ ।

ଜେଲରେ ଖାଇବାକୁ ମିଳୁଥିଲା ଗୋଡ଼ମିଶା ବଗଡାଭାତ, ମାଣ୍ଡିଆ ଚୁନାରେ ତିଆରି ପୋଡ଼ାରୋଟି, ମୂଳାଶାଗ ତରକାରୀ ଓ ଡାଲିପାଣି । ମାଣ୍ଡିଆ ଚୁନାର ଦରସିଝା ରୋଟି ଖାଇ, ଲୁହାହାଣ୍ଡିରେ ରନ୍ଧାଭାତ ଖାଇ ବହୁ ସଂଗ୍ରାମୀ ରକ୍ତଆମାଶୟ ରୋଗରେ ପଡ଼ିଲେ ମଧ୍ୟ ସେମାନଙ୍କୁ ପାନେ ଔଷଧ ଦିଆଯାଉନଥିଲା । ମଲାବେଳକୁ ଜେଲଭିତରେ ଥିବା ହାସପାତାଲକୁ ସେମାନଙ୍କୁ ନିଆଯାଉଥିଲା ଏବଂ ମରିଗଲେ ସେମାନଙ୍କ ପରି-ବାରଙ୍କୁ ଖବର ଦିଆଯାଉନଥିଲା । ଶବ ଫୋପାଡ଼ିଦେଉଥିଲେ ବା ପୋତିଦେଉଥିଲେ ଜେଲ୍ ଜମାନମାନେ ।

୧୯୪୦-୪୧ ଭିତରେ ଏମିତି ଖାଦ୍ୟ ଖାଇ ପ୍ରାୟ ୫୦ ଜଣ ସ୍ୱାଧୀନତା ସଂଗ୍ରାମୀ ମୃତ୍ୟୁବରଣ କରିଥିଲେ । ଜେଲ ଭିତରେ ପୋଲିସ ଅତ୍ୟାଚାରରେ ମରିଥିବା ପ୍ରଥମ ସ୍ୱାଧୀନତା ସଂଗ୍ରାମୀ ଥିଲେ ଜୟପୁର ସହରର ସଦାଶିବ ବେହେରା ଓ ତାଙ୍କ ପଦ ଅନୁସରଣ କରିଥିଲେ ଡମ୍ବରୁ ଡାଲିଆ । ସ୍ୱରାଜ ଭବନ, କଟକଠାରେ ଏ ଦୁଇ ସହିଦଙ୍କ

ପାଇଁ ୧୯୪୧ ମସିହାରେ ଶୋକସଭା କରାଯାଇଥିଲା । ଦେଶ ପାଇଁ, ଜାତି ପାଇଁ, ସ୍ୱାଧୀନତା ପାଇଁ ବଳିଦାନ ଦେଇ ଅମର ହୋଇଥିବା କେତେ ବ୍ୟକ୍ତିଙ୍କ ଶେଷ ସ୍ମୃତିରେ କୋରାପୁଟ ଜେଲ୍‌ର ଇତିହାସ ସ୍ୱର୍ଣ୍ଣିମ ଏହା ଏବଯାଏ ଲେଖାହୋଇନାହିଁ ।

ଏମିତି ଏକ ଅସ୍ୱାସ୍ଥ୍ୟକର ପରିବେଶ, ମାନବୀୟ ଗୁଣ ବିବର୍ଜିତ ନିଷ୍ଠୁର ସରକାରୀ କର୍ମଚାରୀଙ୍କ ଦୌରାତ୍ମ୍ୟ, ଖାଦ୍ୟ ନାମରେ ଅଖାଦ୍ୟ, ମଶା କାମୁଡ଼ା, କାଳୁକୁଣ୍ଡିଆର ଶିକାର ହୋଇ କେତେ ଯେ ସଂଗ୍ରାମୀ ଘରଠାରୁ, ଘରର ସ୍ନେହ, ଗାଁର ମମତାଠାରୁ କେବଳ ଗାନ୍ଧୀଙ୍କ ଆଦର୍ଶରେ ପ୍ରେରିତ ହୋଇ ଯମଯନ୍ତ୍ରଣା ଭୋଗକରିଥିଲେ ଏହି ଜେଲ ଭିତରେ ତାହାର ପଟାନ୍ତର ନାହିଁ ।

ପାଠପଢ଼ୁଆ ମଣିଷ, ସରକାର ଗୋଲାମମାନଙ୍କର ଅତ୍ୟାଚାରରେ ଅତିଷ୍ଠ, ଲୁହ ନ କାନ୍ଦି ରକ୍ତକାନ୍ଦୁଥିବା, ରୋଗ ଯନ୍ତ୍ରଣାରେ ଛଟପଟ ହେଉଥିବା, ଜେଲରଙ୍କ ଘୃଣାର ଶିକାର ହୋଇ ଦଳ ଦଳ ମରୁଥିବା ଏହି ସଂଗ୍ରାମୀଗଣ ଜେଲ ଭିତରେ ଭୋଗୁଥିଲେ ଯମଯନ୍ତ୍ରଣା । ପାଞ୍ଚ ଛଅ ମାସପରେ ସେମାନେ ଖଲାସ ହେଲେ । ଲକ୍ଷ୍ମଣ ନାୟକ ମଧ୍ୟ ସାତଜଣ ସାଥୀଙ୍କ ସହିତ ଖଲାସ ହେଲେ କୋରାପୁଟ ଜେଲରୁ, ଏକ ବୃହତ୍ତର ସଂଘର୍ଷ ପାଇଁ ପ୍ରସ୍ତୁତ ହେବାକୁ, ସମସ୍ତଙ୍କ କଣ୍ଠରେ କୁହାଇବାକୁ—"ଗୋରା ସରକାର ଭାରତଛାଡ଼, ଭାରତଛାଡ଼ ।"

## ୧୦ । ଗୋରା ସରକାର ଭାରତ ଛାଡ଼

ଗୋରା ସରକାର ଜୋର ଜବରଦସ୍ତ ଦ୍ୱିତୀୟ ବିଶ୍ୱଯୁଦ୍ଧ ସହିତ ଭାରତକୁ ଜଡ଼ିତ କରିଦେଲା । କଂଗ୍ରେସଦଳ ଏହାର ପ୍ରତିବାଦ କଲା ଏଣୁ ଦମନନୀତି ଚାଲିଲା । ବହୁ କର୍ମୀ ସ୍ୱେଚ୍ଛାରେ ଜେଲ୍‌ଗଲେ । ବିଲାତ ଲୋକେ ଭାରତକୁ ସ୍ୱାଧୀନତା ଦେବାପାଇଁ କୌଣସି ପ୍ରତିଶ୍ରୁତି ଦେଲେନାହିଁ ।

ବିଲାତ ସରକାର ଭାରତର ବିପ୍ଳବୀମାନଙ୍କୁ ବୁଝାଇବା ପାଇଁ ୧୯୪୨ରେ ସାର୍ ଷ୍ଟାଫୋର୍ଡ଼ କ୍ରିପସ୍‌ଙ୍କୁ ଭାରତ ପଠାଇଲେ । ସେ କଂଗ୍ରେସଦଳ, ମୁସଲିମଲିଗ, ହିନ୍ଦୁ ମହାସଭା, ଦଳିତ ଜାତି ସମିତି ସହିତ କଥାବାର୍ତ୍ତା କଲେ ସତ କିନ୍ତୁ ତାଙ୍କର ମତ କେହି ଗ୍ରହଣ କଲେନାହିଁ । ମହାତ୍ମାଗାନ୍ଧୀ ତାଙ୍କୁ ବିଲାତ ଫେରିଯିବା ପାଇଁ କହିଲେ ।

ତେଣେ ଇଂଲଣ୍ଡର ଖବରକାଗଜରେ ଭାରତର ଆନ୍ଦୋଳନକୁ ନିନ୍ଦାକରାଗଲା । ସେମାନେ ଲେଖିଲେ—ଯେହେତୁ କଂଗ୍ରେସଦଳ ଭାରତର ସବୁ ଲୋକଙ୍କର ପ୍ରତିନିଧି ନୁହେଁ ଏଣୁ ଗୋରା ସରକାର କଂଗ୍ରେସଦଳ ହାତରେ ଭାରତର କ୍ଷମତା ହସ୍ତାନ୍ତର କରିପାରିବ ନାହିଁ ।

ଏଣେ ବିଲାତର ଶତ୍ରୁଭାବେ ମହାଯୁଦ୍ଧ ଲଢ଼ୁଥିବା ଜାପାନ ଭାରତ ଆକ୍ରମଣ କରିବାର ଯୋଜନା କଲା । ସିଙ୍ଗାପୁର ଜାପାନ ଅଧୀନକୁ ଆସିଲା । ଇଂରେଜ ସରକାର ଜାପାନର ମୁକାବିଲା କରିବା ପାଇଁ ଭାରତ ଉପରେ ଭ୍ରୂପପକାଇଲା । ଯୁଦ୍ଧ ଖର୍ଚ୍ଚ ତୁଲାଇବା ପାଇଁ ଭାରତବାସୀଙ୍କ ଉପରେ ନାନା କର ବସାଗଲା । ଏସବୁ କାମପାଇଁ ଭାରତ ସରକାର କଂଗ୍ରେସଦଳକୁ ପଚାରିଗଲେନାହିଁ ।

ଏସବୁ ଅନୀତ ଦେଖି ମହାତ୍ମାଗାନ୍ଧୀ ଶେଷଥର ପାଇଁ ଇଂରେଜମାନଙ୍କୁ ଆହ୍ୱାନ ଦେବା ପାଇଁ ଅଗଷ୍ଟ ମାସ ୭, ୮ ଓ ୯ ତାରିଖରେ ବମ୍ବେଠାରେ ଅଖିଳ ଭାରତ କଂଗ୍ରେସ କମିଟିର ସଭା ଡକାଇଲେ । ସାରା ଭାରତର ନେତା ଯୋଗଦେବା ପାଇଁ ନିମନ୍ତ୍ରିତ ହେଲେ । ଓଡ଼ିଶାରୁ ହରେକୃଷ୍ଣ ମହତାବ, ମାଳତୀ ଚୌଧୁରୀ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ପ୍ରହ୍ଲାଦ ରାୟ, ଲକ୍ଷ୍ମୀନାରାୟଣ ମିଶ୍ର ଯୋଗଦେଇଥିଲେ । କୋରାପୁଟ ଜିଲ୍ଲାରୁ ରାଧାକୃଷ୍ଣ ବିଶ୍ୱାସ-ରାୟ ଏହି ସମ୍ମିଳନୀରେ ଯୋଗଦେଲେ ।

୧୯୪୨ ଅଗଷ୍ଟ ମାସ ୮ ତାରିଖ ଦିନ ବମ୍ବେ କଂଗ୍ରେସ ସମ୍ମିଳନୀରେ ପଣ୍ଡିତ ଜବାହରଲାଲ ନେହେରୁ 'ଭାରତଛାଡ଼' ପ୍ରସ୍ତାବ ଆଗତକଲେ ଏବଂ ସରଦାର ବଲ୍ଲଭଭାଇ ପଟେଲ ଏହି ପ୍ରସ୍ତାବକୁ ସମର୍ଥନ କଲେ । ଏହି ପ୍ରସ୍ତାବରେ ଗୋରା ସରକାରକୁ ଯେତେ ଶୀଘ୍ର ସମ୍ଭବ ଭାରତ ଛାଡ଼ିବାକୁ କୁହାଯାଇଥିଲା । ଆଉ ଯଦି ଗୋରା ସରକାର ଏହା ନ କରନ୍ତି ତା'ହେଲେ ସମଗ୍ର ଭାରତରେ ଭାରତଛାଡ଼ ଆନ୍ଦୋଳନ କରାଯିବ ବୋଲି ସ୍ଥିର-କରାଗଲା ।

ଭାରତଛାଡ଼ ପ୍ରସ୍ତାବ ଉପରେ କହିବାକୁଯାଇ ମହାତ୍ମାଗାନ୍ଧୀ ଭାରତର ସମସ୍ତଙ୍କୁ ଆହ୍ୱାନ କରି କହିଲେ—ମୁଁ ତୁମକୁ ଛୋଟିଆ ମନ୍ତ୍ରଟିଏ କହିବାକୁ ଯାଉଛି । ତାକୁ ମନ-ଭିତରେ ଧରିରଖ ଏବଂ ତୁମର ପ୍ରତି ନିଃଶ୍ୱାସପ୍ରଶ୍ୱାସ ଏହି ମନ୍ତ୍ର ଉଚ୍ଚାରଣ କରୁ । ଏହି ମନ୍ତ୍ରଟି ହେଉଛି 'କର ଅବା ମର' । ଆମେ ଭାରତକୁ ସ୍ୱାଧୀନ କରିବା କିମ୍ବା ଏହି ଚେଷ୍ଟାରେ ମୃତ୍ୟୁବରଣ କରିବା । ଆଉ ଏହି ଦାସତ୍ୱକୁ ଭୋଗିବାପାଇଁ ଆମେ ବଞ୍ଚିରହିବା-ନାହିଁ ।"

'କର ଅବା ମର'ର ଯେଉଁ ମନ୍ତ୍ର ମହାତ୍ମା ଉଚ୍ଚାରଣ କଲେ ତାହା ଭାରତରେ ଗୋରା ସରକାରର ମୂଳଦୁଆ ଦୋହଲାଇଦେଲା । ଗାନ୍ଧିଜୀ ତଥାପି ବିଶ୍ୱାସ କରୁଥିଲେ ଗୋରା ସରକାର ଭାରତୀୟଙ୍କ ଦାବୀକୁ ମାନିନେବ, କିନ୍ତୁ ତାହା ହେଲାନାହିଁ । ଅଗଷ୍ଟ ୮ ତାରିଖ ରାତି ୧୨ଟା ପରେ ବମ୍ବେରେ ଯୋଗଦେଇଥିବା କଂଗ୍ରେସ ନେତାମାନଙ୍କୁ ଗିରଫ କରିବାକୁ ଆରମ୍ଭକଲେ । ସେତେବେଳର ଗଭର୍ଣ୍ଣର ଜେନେରାଲ ଲର୍ଡ଼ ଲିନ୍‌ଲିଥ୍-ଗୋ ଏହି ଗିରଫଦାରୀର ଆଦେଶ ଦେଇଥିଲେ । ଅଗଷ୍ଟ ୯ ତାରିଖ ସକାଳ ୫ଟାରେ ମହାତ୍ମାଙ୍କୁ ଗିରଫକରି ପୁନାଠାରେ ଆଗାଖାଁ ପ୍ରାସାଦରେ ନଜରବନ୍ଦୀ କରାଗଲା । କଂଗ୍ରେସର କାର୍ଯ୍ୟକାରୀ କମିଟିର ସଭ୍ୟମାନଙ୍କୁ ଅହମଦାବାଦ ଦୁର୍ଗରେ ବନ୍ଦୀକରାଗଲା । ଶ୍ରୀ ମହତାବ ମଧ୍ୟ ଏମାନଙ୍କ ମଧ୍ୟରେ ଥିଲେ ।

ଅଗଷ୍ଟ ୯ ତାରିଖ ସକାଳେ ଭାରତଛାଡ଼ ଆନ୍ଦୋଳନ ପ୍ରସ୍ତାବର ନକଲ ଓ ଗାନ୍ଧିଜୀଙ୍କ ନିର୍ଦ୍ଦେଶ ଧରି ରାଧାକୃଷ୍ଣ ବିଶ୍ୱାସରାୟ ଓଡ଼ିଶା ଫେରିଆସିଲେ । ଓଡ଼ିଶାରେ ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ରମାଦେବୀ, ଭଗିରଥୀ ମହାପାତ୍ର, ବିଶ୍ୱନାଥ ଦାସ, ନିତ୍ୟାନନ୍ଦ କାନୁନ୍‌ଗୋ, ରାଜକୃଷ୍ଣ ବୋଷ, ସୁରେନ୍ଦ୍ରନାଥ ପଟ୍ଟନାୟକ, ପ୍ରାଣକୃଷ୍ଣ ପଡ଼ିହାରୀ, ମଦନମୋହନ ପଟ୍ଟନାୟକ, ସଦାଶିବ ତ୍ରିପାଠୀ, ମନମୋହନ ଚୌଧୁରୀ, ରାଧାନାଥ ରଥ, ଆଗ୍ୟର୍ଯ୍ୟ ହରିହର ଦାସ, ଲୋକନାଥ ମିଶ୍ର ଆଦି କଂଗ୍ରେସ ନେତାମାନେ ଗିରଫ ହେଲେ । ଅଗଷ୍ଟ ୧୧ ତାରିଖ ଦିନ ସାଲୁରୁରୁ ଜୟପୁର ଆସୁଥିବା ବାଟରେ ରାଧାକୃଷ୍ଣ ବିଶ୍ୱାସରାୟଙ୍କୁ ଗିରଫ କରାଯାଇ କୋରାପୁଟ ଜେଲକୁ ନିଆଗଲା ।

ଭାରତଛାଡ଼ ପ୍ରସ୍ତାବ ଗୃହୀତ ହେବା ପରେ ଗୋରା ସରକାର କଂଗ୍ରେସଦଳକୁ ବେଆଇନ ଘୋଷଣା କଲେ । ଭାରତସାରା ଧରପଗଡ଼ ଚାଲିଲା । କଂଗ୍ରେସ ଅଫିସ ସବୁ ତାଲା ପଡ଼ି ସିଲ୍ ହେଲା । ଜୟପୁରରେ ଥିବା କୋରାପୁଟ ଜିଲ୍ଲାର କଂଗ୍ରେସ ଅଫିସକୁ ପୋଲିସ ଚଢ଼ାଉକରି ଅଫିସର ଆସବାବପତ୍ର ନଷ୍ଟକରିଦେଇଥିଲେ ଏବଂ କାଗଜପତ୍ର ସବୁ ପୋଡ଼ିଦେଲେ । ସେଦିନ କୋରାପୁଟ ଜିଲ୍ଲା କଂଗ୍ରେସ ସମ୍ପାଦକ ରାଧାମୋହନ ସାହୁଙ୍କୁ ଗିରଫ କରାଗଲା ।

ରାଧାକୃଷ୍ଣ ବିଶ୍ୱାସରାୟ ଗୁପ୍ତରେ ପଠାଇଥିବା ଭାରତଛାଡ଼ ଆନ୍ଦୋଳନର ପ୍ରସ୍ତାବ ଏବଂ ଆନ୍ଦୋଳନରେ କଣ କରିବାକୁ ହେବ ସେ ସମ୍ବନ୍ଧୀୟ ଲେଖା ଜୟପୁର ସହରରେ ଥିବା ଖଦୀ ଭଣ୍ଡାରର କୋରା ପଟ୍ଟନାୟକଙ୍କ ନିକଟକୁ ପଠାଇଦେଲେ । କୋରା ପଟ୍ଟନାୟକ ଏହି ନିର୍ଦ୍ଦେଶନାମାର ହଜାର ହଜାର ନକଲ ସାଇକ୍ଲୋଷ୍ଟାଇଲ କରି ଗୁପ୍ତରେ ପୋଲିସର ନଜରରେ ନପଡ଼ିଲା ଭଳି ଜିଲ୍ଲାର ସବୁ ସବ୍‌ଡିଭିଜନ, ପଞ୍ଚାୟତ କଂଗ୍ରେସ କମିଟିଗୁଡ଼ିକୁ ପଠାଇଦେଲେ । ତେଣେ ଗୁଣୁପୁରରେ ବିଶ୍ୱନାଥ ପଟ୍ଟନାୟକ ଓ ନବରଙ୍ଗପୁରରେ ଲକ୍ଷ୍ମୀଚନ୍ଦ୍ର ଦାସ ଏହି ଲେଖା ସିଧାସଳଖ ରାଧାକୃଷ୍ଣ ବିଶ୍ୱାସରାୟଙ୍କ ଠାରୁ ପାଇ ବାଡାବାଡି ଏହା ବାଣ୍ଟିବାର ବ୍ୟବସ୍ଥା କଲେ । ବଣ ନିଆଁ ପରି ଏ ଖବର ଦିନକ ଭିତରେ ସାରା ଜିଲ୍ଲାରେ ପହଞ୍ଚିଗଲା ।

ଚିଠି ଏମିତି ଥିଲା, "ଗାନ୍ଧୀ ମାହାପୁରର ଡାକ । ସ୍ୱରାଜ ପାଇଁ ଲଢ଼ାଇକର । ନିଜକୁ ନିଜେ ନେତା ବୋଲି ଭାବ । ସରକାର ବୋଲି କେହିନାହିଁ । ଇଚ୍ଛା ଅନୁସାରେ କାମ କର । ଟିକସ ମେଣ୍ଟନଥ । ଯୁଦ୍ଧକୁ ସାହାଯ୍ୟ କରନାହିଁ । ଗୋରା ସରକାର ଭାରତ ଛାଡ଼ ।"

ପ୍ରଚାରପତ୍ର ପାଇବା ସଙ୍ଗେ ସଙ୍ଗେ ଗାଁରେ ଗାଁରେ ସ୍ୱରାଜ ଲଢ଼ାଇ ଆରମ୍ଭ ହୋଇଗଲା । ହାଟବଜାରରେ ଗୋରା ସରକାର ବିରୁଦ୍ଧରେ ନେତାମାନେ କର୍ମୀମାନେ ଭାଷଣଦେଲେ । କେଉଁଠି ବଣ କଟାହେଲା ତ, କେଉଁଠି ପୋଲ ଭଙ୍ଗାହେଲା । କେଉଁଠି ଥାନା ଘେରାଉକରାଗଲା । ଗଳିରେ, କନ୍ଦରେ, ଗାଁରେ ସବୁଠି ଶୁଭିଲା କେବଳ ଗୋଟିଏ

ତାକ ମହାତ୍ମାଗାନ୍ଧୀର ଜୟ, ଗୋରା ସରକାର ଭାରତଛାଡ଼ । ଗଗନ ଅବନୀ ସେ ଡାକରେ । ବଣ କମ୍ପିଲା । ପର୍ବତରୁ ପ୍ରତିଧ୍ୱନିତ ହେଲା ଏହି ଡାକ ।

ଭାରତଛାଡ଼ ଆନ୍ଦୋଳନର ବାର୍ତ୍ତା ଲକ୍ଷ୍ମଣ ନାୟକଙ୍କ ପାଖରେ ପହଞ୍ଚିଲା । ସେ ପାଠକରି ଜାଣିଲେ ଏହା ଶେଷ ଲଢ଼ାଇ ହେବ । ସେ ଆତ୍ମହାତଶୟାରେ ଚକ୍କାରକଲେ ଗୋରା ସରକାର ଭାରତଛାଡ଼ ଏବଂ ଅଲ୍ପଦିନ ଭିତରେ ବାଗ, ଉଦୟପୁର, ଟିମସଗୁଡ଼ା, ମାଥିଲି, ପାନଗୁମ୍ମା, କାଲଆଗୁଡ଼ା ଓ ଆହୁ ଆହୁ ଗାଁରୁ କର୍ମୀମାନେ ଲକ୍ଷ୍ମଣ ନାୟକଙ୍କ ନେତୃତ୍ୱରେ ଗୋରା ସରକାର ଭାରତଛାଡ଼ ବୋଲି କହି ଆନ୍ଦୋଳନ ଆରମ୍ଭକଲେ । ଏହି ଭିତରେ ଜିଲ୍ଲା କଂଗ୍ରେସ କମିଟିର ନିର୍ଦ୍ଦେଶକ୍ରମେ ମାଥିଲି ଥାନା ଘେରାଓ କରିବା ଓ ଶାନ୍ତିପୂର୍ଣ୍ଣ ଉପାୟରେ ଆନ୍ଦୋଳନ କରିବା ପାଇଁ ଲକ୍ଷ୍ମଣ ନାୟକ ବୈପାରୀଗୁଡ଼ା ପଞ୍ଚାୟତ କଂଗ୍ରେସ ସଭାପତି ନୀଳକଣ୍ଠ ପାତ୍ରଙ୍କଠାରୁ ନିର୍ଦ୍ଦେଶ ପାଇଲେ ।

୧୯୪୨ ଅଗଷ୍ଟମାସ ୨୧ ତାରିଖ ଦିନ ମାଥିଲି ଥାନା ଘେରାଓ ପାଇଁ କର୍ମୀମାନଙ୍କୁ ପ୍ରସ୍ତୁତ କରିବାକୁ ଲକ୍ଷ୍ମଣ ନାୟକ ତେନ୍ତୁଲିଗୁମ୍ମାରୁ ପଦଯାତ୍ରାରେ ବାହାରିଲେ । ଗାଁ ଛାଡ଼ିଗଲାବେଳେ ସେ ତାଙ୍କ ଦୁଃଖସୁଖର ସାଥୀ, ତାଙ୍କ ସ୍ତ୍ରୀ ମଙ୍ଗୁଲି ନାୟିକାଣୀକୁ କହିଲେ—ମୁଁ ସ୍ୱରାଜ ଆଣିବାକୁ ଯାଉଛି । ମଙ୍ଗୁଲି ନାୟିକାଣୀ ଲକ୍ଷ୍ମଣ ନାୟକ ଗାଁ ଦାଣ୍ଡର ଶେଷମୁଣ୍ଡରେ ଅଦୃଶ୍ୟ ହେଲାଯାଏ ତାଙ୍କୁ ଚାହିଁରହିଥିଲେ । ସୂର୍ଯ୍ୟ ଉପରକୁ ଉଠୁଥିଲେ ଧୀରେ ଧୀରେ ।

## ୧୧ । ବିଜୟଯାତ୍ରାର ପଥେ

'କର ଅବା ମର' ମନ୍ତ୍ର ଯେମିତି ପଶିଗଲା ଭାରତର ସମସ୍ତ ସ୍ୱାଧୀନତା ସଂଗ୍ରାମୀମାନଙ୍କ ଛାତିରେ । ଲକ୍ଷ୍ମଣ ନାୟକ ସୁମରର ନୀଳକଣ୍ଠ ପାତ୍ରଙ୍କଠାରୁ ଚିଠି ପାଇବାପରେ ଆଉ ବସିବାକୁ ବେଳ ପାଇଲେନାହିଁ । ଲୋକଙ୍କୁ ଏକାଠି କରିବାକୁ ହେବ । ସମସ୍ତ ଖୁବ୍ କମ୍ । ସେ ଖବର ପାଇଲେ ୧୫ ତାରିଖ ଅଗଷ୍ଟ ୧୯୪୨ରେ । ୨୧ ତାରିଖରେ ମାଥିଲି ଥାନା ଆଗରେ ଶାନ୍ତିପୂର୍ଣ୍ଣ ଆନ୍ଦୋଳନ କରିବାକୁ ହେବ । କାନ୍ଧରେ ଝୁଲିମୁଣି ଝୁଲାଇ, ହାତରେ କଂଗ୍ରେସ ପତାକା ଧରି ଆଣ୍ଠୁ ଲୁଚୁନଥିବା ଖଦଡ଼ ଧୋତି, ଦେହରେ ଖଦଡ଼ ପଞ୍ଜାବୀ ଓ ତା' ଉପରେ ଜହରକୋଟ ପିନ୍ଧି ସେ ଘରୁ ବାହାରିଲେ ସାଙ୍ଗରେ ବନସିଂ ପୂଜାରୀ, ବଳରାମ ପୂଜାରୀଙ୍କୁ ଧରି ।

ଶ୍ରାବଣ ମାସ । ମେଘଭର୍ତ୍ତି ଆକାଶ । ବଣମୟ ରାସ୍ତା । ସେ ଦୀର୍ଘ ୫ ଦିନ କାଳ ଦିନରାତି ବୁଲିଲେ ଗାଁରୁ ଗାଁକୁ । ଲୋକଙ୍କୁ କହିଲେ ବେଳ ଆସିଯାଉଛି, ଗୋରା ସରକାର ଏ ଦେଶକୁ ଛାଡ଼ି ଚାଲିଯିବାକୁ ହେବ । ଗାନ୍ଧୀ ମାହାପ୍ରୁର ଡାକରା । ସେ ଯେଉଁ ଗାଁକୁ ଗଲେ ସେଠାକୁ ଆସିଲେ ଶହ ଶହ ଲୋକ ତାଙ୍କ କଥା ଶୁଣିବାକୁ ।

ସେ ଆଉ ତେନ୍ତୁଳିଗୁମ୍ମାର ମୁସ୍ତାଦାର ନଥିଲେ । ସତ୍ୟାଗ୍ରହ କରିବା ହେତୁ ଜୟପୁର ରଜା ବିକ୍ରମଦେଓ ତାଙ୍କୁ ନାୟକ ପଦରୁ ବାହାର କରିଦେଲେ । ଦେଇଥିବା ଜମି ଛଡ଼ାଇନେଲେ । ତଥାପି ଲକ୍ଷ୍ମଣ ନାୟକ ବିଚଳିତ ହେଲେନାହିଁ । ଏହା ନୂଆପୁଟ ତାଲିମର ଫଳ ଥିଲା । ଦେଶପାଇଁ କଷ୍ଟ ସହିବାକୁ ହେବ । ଦୁଃଖ ଆସିବ, ଦଣ୍ଡ ମିଳିବ, ଜୀବନ ବି ଯାଇପାରେ—ଡରିବାକୁ ହେବ ନାହିଁ । ସବୁବେଳେ ସତ୍ୟର ଜୟ ହେବ । ଭଗବାନଙ୍କ ଉପରେ ବିଶ୍ୱାସ ରଖିଲେ ସବୁ ଭଲହେବ—ଏସବୁ ସେ ଶିଖିଥିଲେ ସେଇ ତାଲିମକେନ୍ଦ୍ରରୁ । ଜମିଗଲେ କେତେ, ନାୟକପଦ ଗଲେ କେତେ, ସେ ତ ଆଉ ଘରଘରେ ଗାଁର ନାୟକ ହୁଅନ୍ତି, ସେ ନାୟକ ସାରା ମାଲକାନଗିରି ଇଲାକାର । ସବୁ ଲୋକଙ୍କର ଦୁଃଖ ସୁଖର ସାଥୀ । ସେ ଦୟାଶୀ । ସେ ପୂଜାଶୀ । ତାଙ୍କ କଥା ଦେବତାର କଥାପରି ସତ । ମାଲକାନଗିରି ଲୋକେ ଗାନ୍ଧୀଙ୍କୁ ଦେଖିନଥିଲେ ସତ, ହେଲେ ଲକ୍ଷ୍ମଣ ନାୟକଙ୍କୁ ମାନୁଥିଲେ ଗାନ୍ଧୀଙ୍କ ପରି । ଏମିତି ଲୋକ ସମ୍ମାନ କେତେ ରାଜାଙ୍କ ଭାଗ୍ୟରେ ବା ଜୁଟେ ?

ବୈପାରିଗୁଡ଼ା ଥାନା ଇଲାକାର ଗାଁଗୁଡ଼ିକରେ, ମାଥିଲି ଥାନା ଇଲାକାର ଗାଁ ଗୁଡ଼ିକରେ ଲକ୍ଷ୍ମଣ ନାୟକ ତାଙ୍କ ସ୍ୱଭାବ ସୁଲଭ ଢଙ୍ଗରେ ଲୋକଙ୍କୁ ବୁଝାଇଲେ ଦେଶିଆ ଭାଷାରେ :

ମୁଇଁ ତେନ୍ତଲିଗୁମ୍ମା ଗାଆଁ ଆନୁ ଦଶ୍‌କୋଶ୍ ବାଟ ତେଇଁଆସିଲି ଆଡ଼େ ତୋମାର ସଙ୍ଗେ ଦୁକ୍‌ସୁକ୍ ହେବାର ଲଗି ।

ଆମର ଇ ଗାଏଁ ମାଉଲି ମାଁ ଧରମନୁ କାଇଁଟା ନାଇଁ ? ବଣ୍ ଆଛେ, ଜଙ୍ଗଲ ଆଛେ, ନଦୀ ଘର ସବୁ ଆଚ୍ଛେ । ଇ ବଣ୍ ଜଙ୍ଗଲ, ଇ ମାଟି ଥାନେ ଆମେ ସୁନା ଫଲଇଲୁନ । ମାତର ହାଏ ସବୁ ଭୋଗ କରିନପାରୁ ।

ଆମର କମାଇଲା ଧନ୍‌କେ ରଜାର ପାଇକ୍‌ମନ ଆସି ଲୁଟି ନେବାଇ ଆଡ଼ତ । ମାରପିଟ କରିବାର ଅଚତ୍ । ଇଟା ତମକେ ଭଲ୍ ଲାଗ୍‌ସି ଅଗେକ ବୁଆନ ?

[ ସେ କହନ୍ତି : ମୁଁ ତେନ୍ତୁଳିଗୁମ୍ମା ଗାଁରୁ ଦଶକୋଶ ବାଟ ତେଇଁ ତୁମ ସହିତ ଦପଦ ଦୁଃଖ ସୁଖ ହେବାକୁ ଆସିଛୁ । ଆମର ଏଇ ଗାଁରେ ମାଉଲିମାଙ୍କ କୃପାରୁ ସବୁ ଅଛୁ । ବଣ ଅଛୁ, ଜଙ୍ଗଲ ଅଛୁ, ନଈ ଅଛୁ, ଘର ଅଛୁ । ଏହି ଜଙ୍ଗଲ, ଏଇ ମାଟିରେ ଆମେ ସୁନା ଫଳାଉଚେ । ହେଲେ କଣ ହେବ ଆମେ କଣ ଏସ ସବୁ ଭୋଗ କରି-ପାରୁଛେ ? ରଜାଘର ପାଇକମାନେ ଆସି ସବୁ ଲୁଟିନେଉଛନ୍ତି । ମାରପିଟ କରୁଛନ୍ତି । ତୁମକୁ କ’ଣ ଏସବୁ ଭଲଲାଗୁଛି । ]

ସମସ୍ତେ ବୁଝନ୍ତି ତାଙ୍କର କଥା । ଲକ୍ଷ୍ମଣ ନାୟକ ତାଙ୍କର ଦୁଃଖ କଥାହିଁ କହୁଛନ୍ତି ! କିନ୍ତୁ ଯୁଗଯୁଗର ପରମ୍ପରାଗତ ଭୟ ତାଙ୍କୁ କାବୁ କରିଦିଏ । ସେମାନେ କିଛି କହି-ପାରନ୍ତି ନାହିଁ । ଯଦି ପୋଲିସ ଜାଣିବ ପିଠିରୁ ଛାଲ ଉତ୍ତାରିଦେବ । ଲକ୍ଷ୍ମଣ ନାୟକଙ୍କୁ ଦେଖି ମନରେ ସାହସ ବାନ୍ଧନ୍ତି । ତାଙ୍କ ନିକଟରେ ଜମା ହୁଅନ୍ତି । ତାଙ୍କ କଥା

ଶୁଣନ୍ତି । କେତେ କହନ୍ତି ସତ୍ ସତ୍ । କେତେ ଚୁପ୍ ରହିଯାଆନ୍ତି । କେତେ ତାଙ୍କ ସହିତ ଲଢ଼େଇ କରିବାକୁ ରାଜି ହୋଇଯାଆନ୍ତି । ଗାନ୍ଧୀ କହିଛନ୍ତି କାହାକୁ ହାତ ଉଠାଇବ ନାହିଁ, ଖରାପ କଥା କହିବ ନାହିଁ, ଅହିଂସାରେ କାମ କରିବ । ଲକ୍ଷ୍ମଣଙ୍କ କଥା କେତେ ବୁଝନ୍ତି, କେତେ ବୁଝନ୍ତି ନାହିଁ । ଗାଁରୁ ଗାଁ—ଯେଉଁଠି ରାତ୍ରିହୁଏ ସେଠି ରହିଯାନ୍ତି । ରାତିର ଅନ୍ଧାର ଯେତେବେଳେ ଗାଁକୁ ଘୋଡ଼ାଇପକାଏ, ଘରେ ଘରେ ପୋଲଙ୍ଗତେଲର ମାଟିଦୀପ ଜଳେ, କାହାର ପିଣ୍ଡା କି କାହାର ଅଗଣାରେ ମୁଣ୍ଡାକାଠର ନିଆଁରେ ହାତପୁଆଁଇ ଲକ୍ଷ୍ମଣ ନାୟକ ଆସନ୍ତାକାଲିର କଥା କହନ୍ତି । ଯେଉଁଠି ଯାହା ମିଳିଲା ଖାଆନ୍ତି । କାହାଘରେ ମାଣ୍ଡିଆଯାଉ, ଲୁଣ ତ କାହାଘରେ ଆମଟଶାଗ, ବାମି-ମାଛର ପୁଡ଼ୁଗା (କଞ୍ଚାମରିଚ କଟା ଓ ତେନ୍ତୁଳିପାଣି ଦେଇ ରାନ୍ଧିଥିବା ବାମି ନାମକ ଏକ ପ୍ରକାର ମାଛ) ତ କେଉଁଠି କାହାଘରେ ଭାତ ଓ ବରିପଇଡ । ଆହାରେ ଭଲମନ୍ଦ ନାହିଁ, ଯେସ୍ଥାନେ ଯେମନ୍ତେ ମିଳଇ । ଏହାହିଁ ତ କର୍ମୀଜୀବନ । ସମସ୍ତଙ୍କ ସହିତ ସମାନ ହୋଇଯିବା ଭାବ ।

ପୁଣି ସକାଳ ହୁଏ । ଘନ ଘୋର ରାତି ଗର୍ଭରୁ ସୂର୍ଯ୍ୟ ଉଏଁ । ଭଙ୍ଗା ବାଡ଼ ଉପରେ କୁକୁଡ଼ା ବୋବାଏ କକ୍‌ରେ କଅ । ବାଛୁରି ପିଲା ଲମ୍ଫ ଛଟ୍ ଛଟ୍ କରେ । ଗାଈ କ୍ଷୀର ପହ୍ନାଏ । ଛେଳି ମେଁ ମେଁ କରେ । ଗାଁରେ ଦିନ ହୁଏ । ବେଳ ବଢ଼େ । ଲକ୍ଷ୍ମଣ ନାୟକ ପାହାନ୍ତିଆରୁ ଉଠି ଶୌଚ ହୋଇ ଅରଟ ଧରି ସୂତା କାଟନ୍ତି । ଗାଁ ଲୋକଙ୍କ ସହିତ ମିଶି ରାମଧୂନ ପ୍ରାର୍ଥନା କରନ୍ତି । ଲୋକେ ଆସନ୍ତି ଆଖପାଖ ଗାଁରୁ । ଲକ୍ଷ୍ମଣ ସେମାନଙ୍କୁ ସେମାନଙ୍କ ଭାଷାରେ ବୁଝାନ୍ତି :

"ମୁଇଁ ଆର କାଇ ତମରଲେ ବେଶୀ ଜାନ୍‌ଲି ଆଚେ ? ହେଲେ ଭାଇମନ୍ ଗୋଟେକ୍ କାତା । ଇ ଯୁ ଗାଉଡ଼୍ କି ରବନ ଯୋନ୍ ଆଇସି ଆଚେ, ଲଇ ଆମରଲେ ବେଶୀ ବଂପୁକ ? ହେଲେ ଆମେ କାଇକାଜେ ତାକେ ଡରୁବୁ ? ସେ ରଜାର ଲୋକ୍ ବୋଲି ଡରୁବୁ କି ? ରଜା ହେଇସି ଆଚେ ସାଇବ୍‌ର ଲୋକ୍ । ତାର ଶାଶେ ନଳୀ, ଗୁଲି, ବୋମ୍ବ ଆଚେ । ଆଲେ ତେବେ ଇ କୁଇଲୋକ ରଜା ଆର ସାଇବ୍‌କେ ଗୁଡ଼ଲେ ଆମ୍‌କେ ଆର୍ ନା ଡରାଇ ପାରବୋ । ଇ କଥା ମୁଇଁ ନାଇଁ ଆମର ଦେଶର ବଡ଼ଲୋକ ଗାନ୍ଧୀ ମାହାପ୍ରୁ ସାଙ୍ଗଲାନ । ଗାନ୍ଧୀ ମାହାପ୍ରୁ ସାଙ୍ଗଲା ଗାଁ ଗାଁର ଆମର ଲୋକ୍ ସରକାର କଥା ନା ଶୁଣା । ପାନୁ ନାଇ ଦଅ । ବେଠି, ଗଡ଼ମ ନାଇଁକର୍ । ଗୋଟେକ୍ ଲୋକ୍ ନାଇଦେଲେ ସିନା ହୁଡ଼ବାଏ, ପିଟବାଏ, ମାତର ସବୁ ଲୋକ୍ ନା ଦେଲେ ତାର୍ ମନ୍‌କେ ଗୋରା ସାଇବ୍‌ମନ୍ ଆମର ଦେଶଥାନୁ ଉଠି ଯିବାଇବେ । ଇଟା ତମର ମନ୍‌କେ ପାଇଲାକି ?"

[ ମୁଁ ତୁମମାନଙ୍କଠାରୁ ବେଶି ଜାଣିଛି କି ? କିନ୍ତୁ ଭାଇମାନେ ଗୋଟିଏ କଥା ଏଇ ଯେଉଁ ଫରେଷ୍ଟ ଗାର୍ଡ କି ରେଭେନ୍ୟୁ ଇନସ୍‌ପେକ୍ଟର ଆସେ ତା'ର କଣ ଆମଠୁ ବେଶି

ବଲ କ ? ତଥାପି ଆମେ କାହିଁକ ତାକୁ ଡରୁ କାରଣ ସେ ରଜାର ଲୋକ । ରଜା ଗୋରା ସରକାରର ଅଧୀନ । ସେମାନଙ୍କ ପାଖରେ ନଳୀ, ଗୁଳି, ବୋମା ଅଛି । ଆମେ ଯଦ ଏହି ରଜା ଆଉ ସାହେବଙ୍କୁ ଗ୍ରଡ଼ଦେବା, ଖେଦଦବା ତାହେଲେ ଆମକୁ ଆଉ କେହି ଡରାଇପାରବେ ନାହିଁ । ଏକଥା ମୁଁ କହୁନାହିଁ । ଗାନ୍ଧୀ ମହାତ୍ମା କହୁଛନ୍ତ ।]

ଆହୁରି ବ ସେ କହୁଛନ୍ତ ଯେ ସରକାର କଥା ଶୁଣନ୍ତୁ ନାହିଁ । କର ଦଅନ୍ତୁ ନାହିଁ । ବେଠି ଗଡ଼ମ୍ କରନ୍ତୁ ନାହିଁ । ଜଣେ ଲୋକ ସିନା ଏମିତ ନକଲେ ପୋଲିସ ଗାଳଦେବ, ମାଡ଼ ଦେବ, ମାଫ ସମସ୍ତେ ଏପରି କଲେ ସାହେବମାନେ ଆମଦେଶ ଗ୍ରଡ଼ ଗ୍ଲଲିଯିବେ । ଏକଥା ତୁମ ମନକୁ ପାଇଲାକ ନାହିଁ ? ]

ପୋଲିସର ଡର, ଫରେଷ୍ଟଗାର୍ଡ଼ର ଡର ରହିବ ନାହିଁ । ଜଙ୍ଗଲ ଉପରେ, ହଳ ଉପରେ, ଜମି ପାଇଁ କରଦେବାକୁ ପଡ଼ିବ ନାହିଁ । ଗୋତ ଖଟିବାକୁ ହେବନାହିଁ, ବେଠି ବେଗାରି କଣବାକୁ ହେବନାହିଁ । କମ୍ ମୂଲ୍ୟନେଇ ବହୁ ମୂଲ୍ୟର ଜିନଷ ଗଣ୍ଡା, ଚଲଣ, ସାହୁକାର, ଛଡ଼ାଇ ନବନାଇଁ । ଜଙ୍ଗଲ ନଜର ହେବ । କେମିତ ଏକ ନୂତନ ସ୍ୱପ୍ନରେ ହଜିଗଲେ ଆଦବାସୀଗଣ ଲକ୍ଷ୍ମଣ ନାୟକଙ୍କ କଥାରେ । ତଥାପି ଡର ଗ୍ଲୁଟୁନଥାଏ ।

ଲକ୍ଷ୍ମଣ ନାୟକ ବୁଝିଲେ ସେମାନଙ୍କ ମନର କଥା । ସେ ପୂଜାରି । ଦେବତାକୁ ଡାକଲେ ଦେବତା ଓଳରବ । ମାଓଲି ମା ବଡ଼ ପ୍ରତ୍ୟକ୍ଷ ଦେବୀ, ଠାକୁରାଣୀ । ଆଦବାସୀର ସେ ମା' । ବପଦଆପଦରୁ ରକ୍ଷାକରେ । ତା ଆଗରେ ଯଦ ସେ ଶପଥ କରେ ତା'ହେଲେ ତା'ର ଡର ଗ୍ଲଡ଼ିଯିବ । ଆଦବାସୀ ପରମ୍ପରାର ବଶ୍ୱାସୀ । ଥରେ ଯଦ କଥା ଦେଇଦେଲା ମଣବ ସିନା ପଛେଇବ ନାହିଁ ତା'ର କଥାରୁ । ଥରେ ମାନଗଲେ କୃତଜ୍ଞ ରହିବ ଜୀବନସାରା । ଏଇଟା ତାର ଭିତରର ଚରିତ୍ର । ଏଇଟା ସେ ଶିଖିଅ ସିଛି ତା ବାପ ଅଜା ଅମଳରୁ । ଯେହେତୁ ଲକ୍ଷ୍ମଣ ନାୟକ ନଜ ଜାତଭାଇଙ୍କ ଏହି ପ୍ରକୃତ ଜାଣିଥିଲେ, ତେଣୁ ଗାରେ ଗାଁରେ ସେ ମାଓଲି ମା'ଙ୍କ ନାମରେ ସମସ୍ତଙ୍କୁ ଶପଥ କରାଇଲେ :

"ଭାଇମନ୍ ଠାକ୍‌ରାଣୀ ଲଗେ ପରମାଣ କରି ମଦ ନା ଖାଉ, ମାଡ଼ ଗୋଲ ନାଲଗୁ, କାକେ ନ ଡରୁ । ଗାନ୍ଧୀ ମାହାପ୍ରୁର କଥାକେ ନାମୁ ।"

[ ଭାଇମାନେ ମାଓଲି ଠାକୁରାଣୀଙ୍କ ନାମରେ ଶପଥ କର ମଦ ଖାଇବୁ ନାହିଁ । ମାଡ଼ଗୋଳ ଲଗିବୁ ନାହିଁ । ଗାନ୍ଧୀ ମାହାପ୍ରୁଙ୍କ କଥା ମାନ ଚଳିବୁ । ]

ଏମିତ ଦନରାତ ଏକକର ୧୯୩୭ ମସିହାରୁ ୧୯୪୧ ମସିହାଯାଏ ଲକ୍ଷ୍ମଣ ନାୟକ ତାଙ୍କ ଲୋକଙ୍କୁ ଦେଶକଥା ଶୁଣାଇଲେ । ନଡ଼ର ହେବାକୁ ବୁଝାଇଲେ । ଗାନ୍ଧୀଙ୍କ କଥା କହିଲେ । ସୂତାକାଟି ଲୁଗା ବୁଣାଇବା ଶିଖାଇଲେ । ନଶାପାଣି ଛଡ଼ାଇଲେ । ଲୋକଙ୍କ ମନରେ ଏକତାଭାବ ଜାଗ୍ରତକଲେ । ଏକାଠି ଲଢ଼ିଲେ ଯାଇ ଗୋରା ସରକାର

ଏ ଦେଶ ଛାଡ଼ି ଚାଲିଯିବ ଏ ବିଶ୍ୱାସ ଜନ୍ମାଇପାରିଲେ । ଲୋକେ ଦେଖିଲେ ଯେ ଯାହା କହୁଛନ୍ତି ତାହା କରୁଛନ୍ତି । କିଏ ବାଧ୍ୟକଫଡ଼ିଲା ସେଠି ଲକ୍ଷ୍ମଣ ନାୟକ, କାହାକୁ ପେଷଣ ହେଲା ସେଠି ଲକ୍ଷ୍ମଣ ନାୟକ । ଗଣ୍ଡା, ଚଲାଣ ଅତ୍ୟାଚାର କଲେ ପ୍ରତିବାଦ ଜଣାଇଲେ ଲକ୍ଷ୍ମଣ ନାୟକ । ସରକାରଙ୍କୁ, ରଜାଘର ଲୋକଙ୍କୁ ଟିକସ ମେଣ୍ଟିଦେବାକୁ (ନଦେବା ପାଇଁ) କହିଲେ ଲକ୍ଷ୍ମଣ ନାୟକ । ସେ ହେଲେ ଲୋକଙ୍କ ନାୟକ, ସରକାର ଓ ରଜାଙ୍କର ଶତ୍ରୁ । ତାଙ୍କ ନାମରେ ଅନେକ ଦଣ୍ଡା ଅଭିଯୋଗ ରଜାଙ୍କ ଗ୍ରାମୁରେ । ଲକ୍ଷ୍ମଣ ନାୟକ ଫିତୁରଦାର, ରାଜଦ୍ରୋହ କରିବାକୁ ଲୋକଙ୍କୁ ଉସ୍କାଉଛି । ନିଜେ ରଜା ଯାଇବ ବିରୋଧରେ ଷଡ଼ଯନ୍ତ୍ର କରୁଛି । ଏ ମହାଭୟଙ୍କର ଲୋକ । ରଜା ଏହାର ବିଚାର କରନ୍ତୁ । ଏମିତି ଅନେକ ସତମିଛ ଅଭିଯୋଗ । ଏଗୁଡ଼ିକୁ ଖାତିରିକୁ ନେଲେନାହିଁ ସେ । ସେ ତିଆରିକଲେ ଶହ ଶହ କଂଗ୍ରେସକର୍ମୀ । ସଂଗ୍ରହକଲେ ହଜାର ହଜାର ଚାରିଅଣିଆ ସଭ୍ୟ । ସେ ଆରମ୍ଭକଲେ ୧୯୩୭ରୁ ମାଲକାନଗିରି ତାଲୁକାରେ ଜୟଯାତ୍ରାର ପ୍ରଥମ ଆରମ୍ଭ । ଏହି ଜୟଯାତ୍ରାର ପଥରେ ସେ ଭେଟିଲେ ନାୟକଙ୍କପଦ ଯିବାର ପରଓ୍ୱାନା, ଜମି ଛଡ଼ାଇନେଇ ଯିବାର ପ୍ରତିଶୋଧ, ପୋଲିସର ଅତ୍ୟାଚାର ଓ କୋରାପୁଟ ଜେଲର ଯମଯନ୍ତ୍ରଣା । ତଥାପି ନଇଁଲେ ନାହିଁ ସିଏ ପଶୁବଳ ଆଗରେ ।

୧୯୪୨ରେ ଏ ଯାତ୍ରା ଚରମରେ ପହଞ୍ଚିଲା । ସେ ନୀଳକଣ୍ଠ ପାତ୍ରଙ୍କ ପରାମର୍ଶରେ ଶହ ଶହ କର୍ମୀଙ୍କ ଗହଣରେ ହାତରେ କଂଗ୍ରେସ ପତାକା ଧରି ୨୧ ତାରିଖ ଅଗଷ୍ଟ ୧୯୪୨ରେ ମାଥିଲି ଥାନା ଘେରାଓକରି ଶାନ୍ତିପୂର୍ଣ୍ଣ ଭାବେ ଅହିଂସ ହୋଇ ଗୋରା ସରକାରଙ୍କୁ ଭାରତଛାଡ଼ ଦାବୀ ଜଣାଇବେ ବୋଲି ସ୍ଥିରକଲେ ।

୯ ଅଗଷ୍ଟ ୧୯୪୨ରେ ସବୁନେତା ଜେଲ ଯାଇଥିବାରୁ ନିଜକୁ ନେତା ମନେକରି ଆନ୍ଦୋଳନ ଚଳେଇଯିବାକୁ ରାଧାକୃଷ୍ଣ ବିଶ୍ୱାସରାୟ ଯେଉଁ ଚିଠି ଲେଖି ପଠାଇଥିଲେ ତାହା ଉମରକୋଟଠାରୁ ମୋଟୁଯାଏ, ଗୁଣୁପୁର ସୀମାନ୍ତରୁ ମାଲକାନଗିରିଯାଏ କମ୍ପନ ସୃଷ୍ଟିକଲା । ତହିଁରେ ମାତ୍ର ହଜାର ହଜାର କର୍ମୀ ଅତ୍ୟାଚାରିତ, ଧର୍ଷିତ, ଲୁଣ୍ଠିତ ହେଲେ । ମୃତ୍ୟୁବରଣକଲେ । କେବଳ ଏଇଥିପାଇଁ ଯେ ସେମାନେ ସ୍ୱାଧୀନତା ଲୋଡ଼ୁଥିଲେ । ଏମିତି ସଙ୍କଟସନ୍ଧି ମୁହୂର୍ତ୍ତରେ ଲକ୍ଷ୍ମଣ ନାୟକ ତାଙ୍କ ଅଞ୍ଚଳ ଅଧିବାସୀଙ୍କୁ ଶୁଣାଇଦେଲେ : ଏହା ଶେଷ ସଂଗ୍ରାମ । ଆଉ ଡରିବାର ନାହିଁ । ମାଥିଲି ଥାନା ଉପରେ କଂଗ୍ରେସ ପତାକା ଉଡ଼ିବ ୨୧ ତାରିଖରେ । ସମସ୍ତେ ତିଆର ହୁଅ—ମାଥିଲି ଯିବାକୁ ହେବ । ଗୁଳି ଫୁଟିବ ଫୁଟୁ, ଲାଠି ବାଜିବ ବାଜୁ, କେହି ହାତ ଉଠାଇବ ନାହିଁ । କଂଗ୍ରେସର ନୀତି ଅହିଂସା । ଗାନ୍ଧୀ କହିଛନ୍ତି କାହାକୁ ହିଂସା କରିବନାହିଁ—ଶତ୍ରୁକୁ ମଧ୍ୟ ନୁହେଁ ।

ସମସ୍ତେ ସେଇଦିନ ମାଥିଲି ହାଟରେ ଏକାଠି ହେବାର ବଜ୍ରଶପଥ ନେଇ ବିଦାୟ ନେଲେ । ଏହି ଖବର ଗଣ୍ଡା, ଚଲାଣ, ଚୌକିଦାରଙ୍କ ଦ୍ୱାରା ମାଥିଲି ଥାନା ଅଧିକାରୀ

ସବ୍‌ଇନ୍‌ସପେକ୍ଟର ଜଗା ନାଇକଲୁ ଦୋରାଙ୍କ ନିକଟରେ ପହଞ୍ଚିଗଲି ୧୯-୮-୪୨ ରାତିରେ ।

## ୧୨ । ଧନ୍ୟହେଲା ସେ ମାଟିର ମାଟି

ସ୍ୱାଧୀନତା ଆନ୍ଦୋଳନର ଏହି ସନ୍ଧିସନ୍ଧ ମୁହୂର୍ତ୍ତରେ ଯେତେବେଳେ ସବୁ ବଡ଼ ବଡ଼ ନେତାଙ୍କୁ ସରକାର ବାନ୍ଧିନେଇଗଲେ, କଂଗ୍ରେସକର୍ମୀମାନେ ହତୋତ୍ସାହିତ ହେଲେ ନାହିଁ । ନିଜକୁ ନେତା ମନେକରି ସେମାନେ ଯେଉଁ ବୀରତ୍ୱର ପରିଚୟ ଦେଲେ ତାହା ଜାଣିବା କଥା ।

୧୯୪୨ ଅଗଷ୍ଟରେ ଗୋପବନ୍ଧୁ ଚୌଧୁରୀ ଓ ରମାଦେବୀଙ୍କ କର୍ମକ୍ଷେତ୍ର ବରୀରେ ଗୋରା ସରକାରଙ୍କ ବିରୁଦ୍ଧରେ ଯେଉଁ ସଭା ସମିତି ସ୍ଥାପନ ହୋଇ ଗ୍ରାମମାନଙ୍କ ଦ୍ୱାରା ବିକ୍ଷୋଭ ପ୍ରଦର୍ଶନ କରାଗଲା ଏବଂ ପୋଲିସ ବରୀ ଆଶ୍ରମ ଅବରୋଧ କରିବାରୁ ଲୋକେ ପୋଲିସମାନଙ୍କ ପୋଷାକ ପୋଡ଼ିଦେଇଥିଲେ । ଏହା ୧୭-୮-୪୨ର ଘଟଣା ।

୧୭ । ୮ । ୧୯୪୨ ଦିନ ବାଲେଶ୍ୱର ଜିଲ୍ଲା ଭଦ୍ରକ ସବ୍‌ଡିଭିଜନର ଭଣ୍ଡାରୀ-ପୋଖରୀଠାରେ ବୈଷ୍ଣବ ଚରଣ ନାୟକ ଓ ମୁରଲୀଧର ନାୟକଙ୍କ ନେତୃତ୍ୱରେ ପ୍ରାୟ ପାଞ୍ଚ ହଜାର ସ୍ୱାଧୀନତା ସଂଗ୍ରାମୀ ସେଠା ଥାନା ପୋଡ଼ିଦେଲେ । ପୋଷ୍ଟ ଅଫିସ ଓ ସବ୍‌ରେଜିଷ୍ଟ୍ରି ମଧ୍ୟ ବାଦଗଲା ନାହିଁ । ସେମାନେ ରାସ୍ତାର କାଠପୋଲ ଭାଙ୍ଗିଦେଲେ ଫଳରେ ସରକାର ସେ ଅଞ୍ଚଳର ୧୨ ଖଣ୍ଡ ଗାଁର ଲୋକଙ୍କଠାରୁ ପିଟୁଣି ଟିକସ ଆଦାୟ କରିଥିଲେ । ପୋଲିସ ଗୁଳିଗୁଳାରେ ବହୁ ବ୍ୟକ୍ତି କ୍ଷତବିକ୍ଷତ ହେଲେ । ଷାଠିଏଜଣ ଜେଲ ଗଲେ ।

କୋରାପୁଟ ଜିଲ୍ଲା ମଧ୍ୟ ଏହା ପ୍ରଭାବରୁ ବାଦ୍‌ଗଲା ନାହିଁ । ସାଧାରଣତଃ ଆଦିବାସୀ-ମାନେ ବିଶ୍ୱାସ କରିଗଲେ ଯେ ଭାରତ ସ୍ୱାଧୀନ ହୋଇଗଲା । ଗଡ଼ମ, ପାଲୁ, ବେଠି ଉଠିଯିବ । ସରକାରକୁ ଅଚଳ କରିଦେବା ପାଇଁ ସେମାନେ ମାତିଉଠିଲେ ।

୧୩ । ୮ । ୧୯୪୨ରେ ଜୟପୁର ସହରର ଦୁଇଜଣ ଯୁବକ ହାତରେ କଂଗ୍ରେସ ପତାକା ଧରି ଜୟପୁର ସହରର ଲୋକଗହଳି ଅଞ୍ଚଳରେ ଗାନ୍ଧୀଙ୍କ ବାର୍ତ୍ତା ପଢ଼ିଥିଲେ । ଯାହା ଫଳରେ ଲୋକମାନଙ୍କ ମନରେ ଅଭୂତପୂର୍ବ ଉନ୍ମାଦନା ଆସିଥିଲା ।

୧୬ । ୮ । ୧୯୪୨ରେ ନବରଙ୍ଗପୁର ସବଡ଼ିଭିଜନରେ ତେନ୍ତୁଲିଖୁଣ୍ଟି ଅନ୍ତର୍ଗତ ପାତ୍ରପୁଟ ଗ୍ରାମରେ କଂଗ୍ରେସକର୍ମୀମାନେ ଜମାହୋଇ ମାଧବ ପ୍ରଧାନଙ୍କ ନେତୃତ୍ୱରେ ନବରଙ୍ଗପୁର ଉମରକୋଟ ରାସ୍ତାକୁ ସଂଯୋଗ କରୁଥିବା ଚକଲି ଗ୍ରାମ ନିକଟସ୍ଥ ନଦୀର କାଠପୋଲ ଭାଙ୍ଗିଦେଲେ ।

୧୧ । ୮ । ୧୯୪୨ରେ ନବରଙ୍ଗପୁର ପାପଡ଼ାହାଣ୍ଡି ରାସ୍ତା ନକଟସ୍ଥ ଶଳର୍ଭ ଜଙ୍ଗଲ କାଟି ସଂଗ୍ରାମୀମାନେ ରାସ୍ତା ଅବରୋଧ କରିଦେଲେ । ଏହା ଫଳରେ ଘେନୁଆ ଅମନାତ୍ୟ, ବଳରାମ ଭତରା, ଅର୍ଜୁନ ଅମନାତ୍ୟ ଗିରଫହେଲେ ।

୧୯ । ୮ । ୧୯୪୨ରେ ତାରୁଗାଁର ନର୍ଭୀକ ସ୍ୱାଧୀନତା ସଂଗ୍ରାମୀ ସାନୁମାଝୀଙ୍କ ନେତୃତ୍ୱରେ ୭୦୦ ଜଣ କଂଗ୍ରେସକର୍ମୀ ଜଟାବାଲ ଏବଂ ସରାଗୁଡ଼ାର କାଠପୋଲ ଭାଙ୍ଗିଦେଇ ଶହ ଶହ ଗଛ କାଟିଦେଲେ । ଟେଲିଫୋନ ଖମ୍ବ ଉପାଡ଼ିପକାଇଲେ । ସେହିଦନ ବ୍ରିଟିଶ ଶାସନ ଲୋପହେଲା ବୋଲି ପ୍ରଚାର କରୁଥିବା ସମୟରେ ଅଧରାତରେ ପୋଲିସ ସ୍ୱାଧୀନତା ସଂଗ୍ରାମୀ ମହମ୍ମଦ ବାଜା, ରାଇଧର ଜାନୀ ଓ ଏକଶାର ବଣ୍ଡକୁ ଭତରା ଗିରଫ ହେଲେ ।

୧୪ । ୮ । ୧୯୪୨ରେ କୋରାପୁଟ ଜିଲ୍ଲା ନନ୍ଦପୁର ତାଲୁକାଠାରେ ସ୍ୱାଧୀନତା ସଂଗ୍ରାମୀ ଭଗବାନ ଖେମୁଣ୍ଡୁଙ୍କ ନେତୃତ୍ୱରେ ଛଅଶହରୁ ସାତଶହ ସଂଗ୍ରାମୀ ଜମାହୋଇ ଆନ୍ଦୋଳନ କରିବାରୁ ନନ୍ଦପୁର ଥାନାର ପୋଲିସ ଭଗବାନ ଖେମୁଣ୍ଡୁ ଓ ନୀଳକଣ୍ଠଙ୍କୁ ଗିରଫକଲେ । ଏହାର ପ୍ରତିବାଦରେ ଲୋକମାନେ ସ୍ଥାନୀୟ ମଦଭାଟି, ଅବକାରୀ ଗୋଦାମ, କାଷ୍ଟିଆହୁଦାକୁ ଆକ୍ରମଣକରି ସବୁ ଭାଙ୍ଗିରୁଜି ଦେଇଥିଲେ ଏବଂ ରେକର୍ଡ଼-ପତ୍ରରେ ନଆଁଲଗାଇଦେଲେ । ଏହା ଫଳରେ ୧୧୯ ଜଣଙ୍କୁ ହାଜତକୁ ଯିବାକୁ ପଡ଼ିଲା ।

୧୫ । ୮।୧୯୪୨ରେ ପ୍ରାୟ ଏକହଜାର ସଂଗ୍ରାମୀ ଜୟପୁର ତାଲୁକ ଅଫିସ ଓ ଥାନା ଘେରାଓ କଲେ । ପୋଲିସ ଲାଠି ଚାର୍ଯ କଲା । ଏହି ଘେରାଓରେ ଲକ୍ଷ୍ମଣ ନାୟକ ମଧ୍ୟ ଉପସ୍ଥିତ ଥିଲେ । ତାଙ୍କୁ ପୋଲିସ ଗିରଫ କରିବାପାଇଁ ଆସିବା ଜାଣି ସେ ବନ୍ଧୁ-ମାନଙ୍କ ପରାମର୍ଶରେ ଘୁମରର ନୀଳକଣ୍ଠ ପାତ୍ରଙ୍କ ଗାଁକୁ ଚାଲିଆସିଲେ । ଏହା ତାଙ୍କପାଇଁ ନରାପଦ ଆଶ୍ରୟସ୍ଥଳ ଥିଲା ।

ସେହିଦନ ମାଥଲି-ପାଡ଼ୁଆ ଥାନାନ୍ତର୍ଗତ ବଡ଼ଘର ଅଫିମ ଦୋକାନକୁ ସ୍ୱାଧୀନତା ସଂଗ୍ରାମୀମାନେ ନଷ୍ଟକରିଦେଲେ । ତାପରେ ସେମାନେ ବଡ଼ଘର ମୁସ୍ତାଦାର କେଶବ ପାତ୍ର ଘରଆଡ଼କୁ ହାତରେ କଂଗ୍ରେସ ପତାକାଧରି ଚାଲିଲେ । ଏହି ମୁସ୍ତାଦାର ଯେତକ ଅତ୍ୟାଚାରୀ ସେତକ ନଷ୍ଠୁର ଥିଲା । ରଜାଘର କର୍ମଚାରୀଙ୍କୁ ହାତରେ ରଖି ନରୀହ, ସରଳ ଆଦିବାସୀଙ୍କୁ ଖୁବ ହଇରାଣ ହରକତ କରୁଥିଲା । ତାପରେ ସେମାନେ ବଡ଼ଘରର ମଦଦୋକାନକୁ ବଳପୂର୍ବକ ବନ୍ଦକରିଦେଲେ ।

ଏଣେ ଗୁଣୁପୁରରେ ଘଟଣା ଅନ୍ୟରୂପ ନେଲା । ସଂଗ୍ରାମୀମାନେ ମଦ ଦୋକାନ ଆଗରେ, ଅଦାଲତ ଆଗରେ ଏବଂ ଦୋକାନୀମାନଙ୍କ ଦୋକାନ ଆଗରେ ଧାରଣାଦେଇ ଜେଲ ଗଲେ । ଦଶମନ୍ତପୁର ଥାନାକୁ ଯାଇ ସଂଗ୍ରାମୀମାନେ ଆମେ ସ୍ୱାଧୀନ ହୋଇଗଲୁ

ବୋଲି ସ୍ଲୋଗାନ ଦେଲେ । ଲକ୍ଷ୍ମୀପୁର ଥାନା ଘେରାଓକରି ସତ୍ୟାଗ୍ରହୀମାନେ କାଗଜପତ୍ର ପୋଡ଼ିଦେଲେ ।

୧୮ । ୮ । ୧୯୪୨ରେ ପାଡ଼ୁଆ ଥାନାର ଗୁଣେଇପଦା ଗାଁର ହାଟରେ ୪୦୦ ଜଣ କଂଗ୍ରେସକର୍ମୀ ଜମାହୋଇ ହାଟ କଣ୍ଟ୍ରାକ୍ଟର ମଙ୍ଗଳାଉରତନଙ୍କୁ ହାଟପାଳି ନଦେବା ପାଇଁ ବାଧ୍ୟକଲେ । ସେ ଅମଙ୍ଗ ହେବାରୁ ସେମାନେ ସାରା ହାଟକୁ ନଷ୍ଟଭ୍ରଷ୍ଟ କରିଦେଲେ । ଏମିତି ସାରା କୋରାପୁଟ ଜିଲ୍ଲା ଭାରତଛାଡ଼ ଆନ୍ଦୋଳନକୁ ନିଜ ନିଜ ଶୈଳୀରେ ଆରମ୍ଭକଲେ । ଯୁଗଯୁଗର ସଞ୍ଚିତ ଅସନ୍ତୋଷ ଯେମିତି ରୂପନେଲା ଭୀଷଣ ଆକାରରେ । ଏଥିରୁ ଲକ୍ଷ୍ମଣ ନାୟକଙ୍କ ଅଞ୍ଚଳ ବା ବାଦ୍‌ଯାଆନ୍ତା କେମିତି ?

୧୭ । ୮ । ୧୯୪୨ ଦିନ ଲକ୍ଷ୍ମଣ ନାୟକଙ୍କ ନେତୃତ୍ୱରେ ସତ୍ୟାଗ୍ରହୀମାନେ କଂଗ୍ରା-ବେଡ଼ା ମଦଦୋକାନ ଘେରାଓକରି ଭାଙ୍ଗିଦେଲେ । ସେଦିନ ଅପରାହ୍ନରେ କୁଣ୍ଡି-ପାଲିରେ ଲକ୍ଷ୍ମଣ ନାୟକ ପହଞ୍ଚିଲେ । ସେ ଗାଁର ଆଦିବାସୀ ଓ ଗଣ୍ଡଡ଼ମାନେ ହାତରେ କଂଗ୍ରେସ ପତାକା ଓ ଲାଠିଧରି ମଦଦୋକାନ ଉପରେ ଆକ୍ରମଣ କଲେ । ୧୮ । ୮ । ୧୯୪୨ରେ ସିନ୍ଦେବେଡ଼ାର ମଦ ଦୋକାନ ଓ ଅପରାହ୍ନରେ ସାଲେମୀର ଅଫିମ ଦୋକାନକୁ ଭାଙ୍ଗିଦିଆଗଲା । ସାଲେମୀର ପଦଲାମ ନାୟକ ଏଥିରେ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ । ମାଲକାନଗିରିର ମୋଟୁ ସିଂ, ଯିଏକି ତାନଗୁଡ଼ାର ନାୟକ ଥିଲେ ଯାହାଙ୍କୁ ଲୋକେ ‘ଲାଲରଜା’ ବୋଲି ଡାକୁଥିଲେ ସତ୍ୟାଗ୍ରହୀଙ୍କ ନେତୃତ୍ୱ ନେଲେ । ୧୯ । ୮ । ୪୨ରେ ଲକ୍ଷ୍ମଣ ନାୟକ, ବଳରାମ ପୂଜାରୀ, ପଦଲାମ ନାୟକ ଏବଂ ମୋଟୁ ସିଂ ବାମାପାଲି ହାଟରେ ଲୋକଙ୍କୁ ଭାରତଛାଡ଼ର କଥା କହିଲେ । ସନ୍ଧ୍ୟାରେ ପୁଷପାଲୀ ମଦ ଦୋକାନ ଭଙ୍ଗାଗଲା । ସେମାନେ ପାଟିକରି ଜଣାଇଦେଲେ ବ୍ରିଟିଶରାଜ ଗଲା, ସ୍ୱରାଜ ଆସିଲା ।

ଏମିତି ହଟ୍ଟଗୋଳ ଭିତରେ ୨୧ । ୮ । ୧୯୪୨ ପହଞ୍ଚିଗଲା । ପୋଲିସ କଂଗ୍ରେସ କର୍ମୀଙ୍କଦ୍ୱାରା କେବେ ଏତେ ହନ୍ତସନ୍ତ ହୋଇନଥିଲେ । ପୋଲିସ, ରାଜକର୍ମଚାରୀ, ହାଟ କଣ୍ଟ୍ରାକ୍ଟର, ମଦଦୋକାନୀ ସମସ୍ତଙ୍କ ରାଗ ଲକ୍ଷ୍ମଣ ନାୟକଙ୍କ ଉପରେ ଅଜାଡ଼ି ହୋଇପଡ଼ିଲା ।

ପୂର୍ବନିର୍ଦ୍ଧାରିତମତେ ଦୈପାରିଗୁଡ଼ାଠାରୁ ମାଥିଲି ଥାନାର ଅଧୀନରେ ଥିବା ସମସ୍ତ ଆଦିବାସୀ ଗାଁର ଲୋକମାନେ ଲକ୍ଷ୍ମଣ ନାୟକଙ୍କ କଥା ମାନି ହାତରେ କଂଗ୍ରେସ ପତାକା ଧରି, କାନ୍ଧରେ ଝୁଲିମୁଣି ଝୁଲାଇ, ରାମଧୂନ ଗାଇ ମାଥିଲି ହାଟରେ ପହଞ୍ଚିବା ପାଇଁ ବାହାରିଲେ । ୧୯୪୨ ମସିହା ବେଳକୁ ମାଥିଲି ମାଲକାନଗିରି ତହସିଲ ଅଧୀନରେ ଥିଲା । ମାଥିଲି ଜୟପୁର-ମାଲକାନଗିରି ରାସ୍ତାରେ ଅବସ୍ଥିତ । ମାଲକାନଗିରି ସବ୍-ଡ଼ିଭିଜନର ଉତ୍ତରପୂର୍ବ ଦିଗରେ ଏହା ମାଲକାନଗିରିଠାରୁ ୨୭ ମାଇଲ ଦୂରରେ ଏବଂ ଜୟପୁରଠାରୁ ୪୦ ମାଇଲ ଦୂରରେ ଅବସ୍ଥିତ । ୧୯୪୧ ମସିହା ଜନଗଣନା ଅନୁସାରେ

ମାଠିଲର ମୋଟ ଲୋକସଂଖ୍ୟା ଥିଲା ୧୯୩୪ । ସେତେବେଳକୁ ମାଠିଲରେ ଗୋଟିଏ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର, ଗୋଟିଏ ସ୍କୁଲ ଏବଂ ଗୋଟିଏ ଥାନା ପ୍ରତିଷ୍ଠିତ ହୋଇଥିଲା ।

ଏହି ମାଠିଲ ଥାନାନ୍ତର୍ଗତ ସମଗ୍ର ଅଞ୍ଚଳ ଭାରତଛାଡ଼ ଆନ୍ଦୋଳନରେ ବିଶେଷ ଭୂମିକା ଗ୍ରହଣ କରିଥିଲା । ସଂଗ୍ରାମୀମାନଙ୍କ ଦ୍ୱାରା ୨୧ । ୮ । ୧୯୪୨ରେ ମାଠିଲ ଥାନା ଘେରାଓ କରାଯିବାର ଶୁଣି ମାଠିଲ ଥାନା ଇନ୍‌ସପେକ୍ଟର ପରିସ୍ଥିତିକୁ ସମ୍ଭାଳିବା ପାଇଁ ଅଧିକ ପୋଲିସ ପଠାଇବାକୁ ମାଲକାନଗିରି ପୋଲିସ ସର୍କଲ ଇନ୍‌ସପେକ୍ଟରଙ୍କୁ ତୁରନ୍ତ ଖବର ପଠାଇଲେ । ଇଂରେଜ ସରକାର ଓ ଜୟପୁର ରାଜାଙ୍କ ଖାଲେଣି ପଡ଼ିଗଲା । ସେମାନେ ଜାଣିଥିଲେ ଲକ୍ଷ୍ମଣ ନାୟକଙ୍କୁ ଗିରଫ କରିବା ସହଜ ନୁହଁ । ତାଙ୍କ ପଛରେ ଥିବା ଲୋକସମର୍ଥନ ଯେ କେତେ ବଳଶାଳୀ ଏହା ସେମାନେ ଜାଣିଥିଲେ । ଯଦି ଲକ୍ଷ୍ମଣ ନାୟକ ଦୁର୍ଦ୍ଧର୍ଷ ବଣ୍ଡାଜାତିକୁ ଏହି ଆନ୍ଦୋଳନରେ ମତାଇ ମାଠିଲ ଥାନା ଘେରାଉ କରିବାକୁ ପଠାଇଦିଅନ୍ତି ଘଟଣା ଅଣାୟତ୍ତ ହୋଇଯିବ । ଏମାନେ ଘାର, ନିଷ୍ଠୁର, ମାନିଥିଲେ ଜୀବନ ଦେଇଦେବେ, ନମାନିଲେ ଜୀବନ ନେଇଯିବେ । ଏମାନଙ୍କ ବିଷାକ୍ତ ତୀରମୁନରେ ବଣର ବାଘ ବି ଟଳିପଡ଼େ, ଆଉ ପୋଲିସ ଫରେଷ୍ଟଗାର୍ଡ଼ କେତେ ମାତର ? ଏହି ଛନକା ସ୍ଥାନୀୟ ପୋଲିସକୁ ବେଶି ଉଦ୍‌ବେଗିତ କରିପକାଇଲା ।

ଯଦି କଂଗ୍ରେସକର୍ମୀମାନେ ହଠାତ୍ କୌଣସି କାରଣରୁ ଅହିଂସା ଛାଡ଼ି ହିଂସା କରିବାକୁ ଓହ୍ଲାଇଆସନ୍ତି ତା'ହେଲେ କ'ଣ ହେବ ଏହି ଚିନ୍ତା ଘାରିଲା ମାଠିଲ ଥାନାର ଜଗାନାଇକୁଲୁ ଦୋରାଙ୍କୁ । ସେ ଘନ ଘନ ମାଲକାନଗିରି ସହିତ ସମ୍ପର୍କ ରଖିଲେ । ରିଜର୍ଭ ପୋଲିସ ମଗାଇ ରଖିଲେ । ଥାନା ପାଖରେ ହାତୀ ଜଗାଇଲେ, ଆଉ ପୋଲିସ କର୍ମଚାରୀମାନେ ଗାଁ ଗାଁ ବୁଲି ଲୋକଙ୍କୁ କହିଦେଲେ ଯଦି ସେମାନେ ୨୧ ତାରିଖରେ ମାଠିଲକୁ ଆସନ୍ତି ଆଉ କେବେ ଘରକୁ ଫେରିବେ ନାହିଁ । ସ୍ୱାଧୀନତାର ମୋହନବଂଶୀ ଶୁଣି ଯେଉଁ ବନବାସୀ ଏବେ ଅଧୀର, ଅସ୍ଥିର ସିଏକି ମାନିଥାନ୍ତା ପୁଲିସର କଥା ? ଲକ୍ଷ୍ମଣ ନାୟକ କହିଛନ୍ତି, ଗାନ୍ଧୀ ମାହାପ୍ରଭୁ କହିଛନ୍ତି ଯିବାକୁ ହେବ । ୨୦ ତାରିଖ ରାତିସାରା ସବୁ ଗାଁରେ ଲୋକ ମାଠିଲ ଯିବାପାଇଁ ପ୍ରସ୍ତୁତ ହେଲେ । ଚରମ ପ୍ରତୀକ୍ଷାର ଶେଷହେବ ଯେମିତି ।

ପାହାନ୍ତିଆ ହେଲା ବେଳକୁ ସବୁ ଗାଁରୁ ପାଞ୍ଚ, ଦଶ, ପନ୍ଦର କର୍ମୀ ହାତରେ ଲଠି, କଂଗ୍ରେସ ପତାକା ଧରି, ମୁଣ୍ଡରେ ଖଦଡ଼ ଟୋପି ପିନ୍ଧି ବାହାରିଲେ । ମୁହଁରେ ରାମଧୂନ ଓ ଗାନ୍ଧୀ ମାହାପ୍ରଭୁଙ୍କ ଜୟ, ବନ୍ଦେ ମାତରଂର ଧ୍ୱନି । ଇତିହାସ ସୃଷ୍ଟିକରିବାକୁ ଆସୁଥିଲା ୨୧ । ୮ । ୪୨ର ମେଘଲ ଦିବସ ମାଠିଲକୁ ଧୀରେ ଧୀରେ । ସେଦିନ ହେବ ଏକ ଉଦ୍‌ବେଳର ଦିନ ।

# ୧୩। ମାଠିଲ ଗୁଳିକାଣ୍ଡ

ସେଦିନ ଶ୍ରାବଣ ମାସ କୃଷ୍ଣପକ୍ଷର ଗୋଟିଏ ଦିନ । ଆକାଶରେ କଳାମେଘ ଜମିରହି ବର୍ଷିବ ବର୍ଷିବ ହେଉଛି । ବର୍ଷାପଡ଼ିନାହିଁ । ମାଠିଲ ଆଡ଼କୁ ଆଗେଇ ଚାଲିଛନ୍ତି ଶହ ଶହ କର୍ମୀ । କାଦୁଅ, ବଣ, ସାପ, ବାଘ, ବଣୁଆଜନ୍ତୁ କାହାକୁ ଖାତିର ନକରି ସେମାନେ ଯାଉଛନ୍ତି ସ୍ୱରାଜ ଆଣିବାକୁ । କେମିତି ଏକ ଅନନୁଭୂତ ଉନ୍ମାଦନା । ଆଉ ରହିବନାହିଁ ଦୁଃଖଦୁର୍ଦ୍ଦଶା । ଲକ୍ଷ୍ମଣ ନାୟକ କହିଛନ୍ତି ମାଠିଲ ହାଟପଦାରେ ସମସ୍ତେ ଜମାହେବେ । ସେଠି ସଭା ହେବ । ତାପରେ ସେମାନେ ଯିବେ ମାଠିଲ ଥାନାକୁ । ସେଠି ଧାରଣା ଦେବେ ଗିରଫ ହେଲେଯାଏ । କଂଗ୍ରେସର ତିରଙ୍ଗା ପତାକା ଉଡ଼ାଇବେ ଥାନାଘର ଉପରେ । ସ୍ୱାଧୀନ ହେଲେ ବୋଲି ଘୋଷଣା କରିବେ । ଆଖି ଫିଟିଯାଇଛି ସମସ୍ତଙ୍କର ।

ଲୋକ ଆସୁଛନ୍ତି ଦୂରଦୂରାନ୍ତରୁ । ଉତ୍ତରରୁ କୋଲାବ ନଦୀ ପାରହୋଇ ଆସୁଛନ୍ତି ଲୋକ ତେନ୍ତୁଳିଗୁମ୍ମା, ବାଘ, ଉଦୟଗିରି, ଲୁଲେରୁ, କୁକୁର୍‌କୋଣ୍ଡା ଓ ସାଲିମି ଅଞ୍ଚଳରୁ । ଆସୁଛନ୍ତି ସ୍ୱର୍ଣ୍ଣଗିରି ଅଞ୍ଚଳରୁ, ଗୁପ୍ତେଶ୍ୱର ପୀଠରୁ । ଆସୁଛନ୍ତି ଖଇରପୁଟ ଓ ଗୋବିନ୍ଦ-ପାଲିରୁ, ଆସୁଛନ୍ତି ମାଲକାନଗିରିର ବଣପାହାଡ଼ ଭିତରେ ଥିବା ସାନ ବଡ଼ ଗାଁରୁ ଖଇରଆନଦୀ ପାରହୋଇ ।

ସେମାନେ ଆସିଛନ୍ତି ବୁଢ଼ା ବାପା ମାଙ୍କୁ ଛାଡ଼ି । ଘରେ ସ୍ତ୍ରୀ ପିଲାଙ୍କୁ ଛାଡ଼ି । ଜମି ବାଡ଼ି, ବାଡ଼ିର ଲାଉ, କୁମ୍ଭଡ଼ା (ବୋଇତାଳୁ) ଶେମିବୁଟା (ଶିମ୍ବ), ମକା, ମାଣ୍ଡିଆ କ୍ଷେତକୁ ଛାଡ଼ି, ପ୍ରିୟ ଗାଁକୁ ଛାଡ଼ି । ମାଓଲି ମା, ଖାରଖମ୍ବ ଦେବତାକୁ ଜୁହାର ହୋଇ । କିଏ ଜାଣେ ଏମାନେ ଆଉ ଘରକୁ ଫେରିବେକି ନାହିଁ ? ଏକ ନୂଆ ସପନର ଦେଶରେ ପାଦରଖିବା ପାଇଁ । ଇଏ ବି ଯେମିତି ଗୋଟେ ମହାଭାରତ ଯୁଦ୍ଧ । ଗୋଟିଏ ପଟେ ସାଇବ, ରଜାର ଫଉଜ, ଗୁଳି, ଗୁଳା, ଖଣ୍ଡା କାତି ଆଉ ପଟେ କଂଗ୍ରେସର ଅହିଂସା ନୀତି, ପତାକା, ମହାତ୍ମାଗାନ୍ଧୀର କଥା । ହିଂସା ସଙ୍ଗେ ଅହିଂସାର ଯୁଦ୍ଧ, ଏମିତି ଶୁଣା ନଥିଲା କେବେ । ସବୁରି ଆଗରେ ଝୁଲିମୁଣି, ହାତରେ ତିରଙ୍ଗା ପତାକା. ମୁଣ୍ଡରେ ଖଦଡ଼ ଟୋପି, ଖଦଡ଼ ପଞ୍ଜାବୀ ଉପରେ ଜହରକୋଟ ପିନ୍ଧି ଲକ୍ଷ୍ମଣ ନାୟକ । ଏ ଯୁଦ୍ଧର ସେ ସେନାପତି । ଗଗନପବନ ଅରୁଛି ମହାତ୍ମାଗାନ୍ଧୀ ଙ୍କ ଜୟଧ୍ୱନିରେ । ସମସ୍ତ ଦିନ ନଅଟା ଅଧେ ହେବ । ଏମାନେ ପହଞ୍ଚିଲେ ମାଠିଲ ହାଟ ପଦାରେ ଧାଡ଼ି ଧାଡ଼ି ହୋଇ ଶୃଙ୍ଖଳିତ ସୈନ୍ୟପରି ପାଦପକାଇ । ଏମାନଙ୍କୁ ଦେଖିବା ପାଇଁ ହାଟରେ ବହୁତ ଭିଡ଼ । ବଳରାମ ପୂଜାରୀ ହାଟପଦାର ପଶ୍ଚିମ ପାଖ ଖାଲି ଜାଗାରେ ରଖାଇଲେ ଏହି ପଥଶ୍ରାନ୍ତ ସଗ୍ରାମୀମାନଙ୍କୁ ।

ସେଦିନ ଶୁକ୍ରବାର । ହାଟପାଳି । ମାତିଲି ହାଟ ମାଲକାନଗିରିର ଗୋଟିଏ ବଡ଼ ହାଟ । ଅନେକ ଲୋକ ବିକାକିଣା କରିବାକୁ ଆସିଥାନ୍ତି । ସେଦିନଟି ଲକ୍ଷ୍ମଣ ନାୟକ ବାଛିଥିଲେ ଜାଣିଶୁଣି । ସ୍ୱରାଜର କଥା ଶୁଣାଇଥାଇବେ ସମସ୍ତଙ୍କୁ । ଲକ୍ଷ୍ମଣ ନାୟକ ସମସ୍ତଙ୍କ କଥା ବୁଝି ଥିଲେ । ହାଟପଦାରେ କଂଗ୍ରେସ ପତାକାର ସଂଖ୍ୟା ଅସୁମାରି ।

ଏ ଏକ ମହାମିଳନର ତୀର୍ଥସ୍ଥଳୀ । ଯାନମାନେ ବଡ଼ମାନଙ୍କୁ ନାଇଁ ଦୁଇ ହାତରେ ପାଦଛୁଇଁ ଜୁହାର ହଉଥିଲା ହେଲେ । ପରସ୍ପର କୁଶଳ ଆକୁରେଇ ହେଲେ । ବଂଶିଆଘାଟ ଗାଁର ଉଦୟନାଥ ଓଝା ହାଟସାରା ଟମଟମା (ଗ୍ରେଟ ନାଗରା ପରି ବାଦ୍ୟଯନ୍ତ୍ର, ଯାହାର ଶବ୍ଦ ଢୋଲବାଜିଆ ପରି ଶୁଭେ) ମାରି ବଡ଼ ପାଟିରେ ଜଣାଇଦେଉଥିଲା ଯାତ୍ରୀ-ମାନେ କେଉଁଠି ସେମାନଙ୍କର ମୁଣା ଆଉ ଆଉ ଜିନିଷ ରଖିବେ, କେଉଁଠ ସଭାପାଇଁ ଜମାହେବେ । ଯାତରା ଜେମିତି । ଢେଣରା ଯାତ୍ରା, ରଥଯାତ୍ରା ପରି ଲୋକଗହଳ । ହାଟକୁ ଆସିଥିବା ଲୋକମାନେ ବିସ୍ମିତ, ବିବ୍ରତ, ଆଶଙ୍କିତ ହେଲେ ବି ଲକ୍ଷ୍ମଣ ନାୟକଙ୍କ ପ୍ରତି କୃତଜ୍ଞ ।

ସବୁଠୁ ବେଶୀ ସେଦିନ ଛଟପଟ ହେଲେ ମଦବେପାରୀ ଶଙ୍କରସ୍ୱାମୀ ଓ ନରସିଂହ ପୂଜାରୀ । ହାଟପାଖରେ ମଦ ଦୋକାନ କରି ହାଟଦିନ ଲୋକଙ୍କୁ ମଦ ବିକି ସେ ଭଲ ଦୁଇପଇସା ହାତପେଠ କରିଥାନ୍ତି । ହାଟ ନିଲାମ ଧରିଥିବା ନରସିଂହ ପୂଜାରୀ ବିକାଳିମାନଙ୍କଠାରୁ ମୁଣ୍ଡପିଛା ପଇସାଏ, ଦୁଇପଇସା, ଅଣାଏ, ଦିଅଣା ପାଲୁ ଆଦାୟ କରିଥାନ୍ତି । ସେତକ ହେଲାନାହିଁ ସେଦିନ । ଲକ୍ଷ୍ମଣ ନାୟକଙ୍କୁ ଦେଖି ମଦଦୋକାନୀ ଦୋକାନ ବନ୍ଦକରି ଭୟରେ ସେ ସ୍ଥାନ ଛାଡ଼ି ଚାଲିଗଲା । ଲକ୍ଷ୍ମଣ ନାୟକଙ୍କ କଥାରେ ମାତି ବିକାଳିମାନେ ହାଟପାଲୁ ଦେବାପାଇଁ ରାଜିନହୋଇ ନରସିଂହ ପୂଜାରୀଙ୍କୁ ମନା କରିଦେଲେ । ଏ ଦୁହିଙ୍କ ବେପାର ମାରିଗଲା । ମନରେ ରାଗ, କିଛି କରି ନ ପାରିବାର ଅସହାୟତା ମିଶି ଏ ଦୁହେଁ ମନେ ମନେ ଲକ୍ଷ୍ମଣ ନାୟକଙ୍କ ମରଣ ମନାସିଲେ ।

ଦିନ ସାଢ଼େ ଦଶଟା ହେଲା । ହାଟର ପଶ୍ଚିମ ପାଖରେ ଶହ ଶହ କଂଗ୍ରେସକର୍ମୀ ଧାଡ଼ିବାନ୍ଧି ଛିଡ଼ାହେଲେ । ଖାଲି ହାତ । ଅଧିକାଂଶଙ୍କ ବୟସ ୩୫ରୁ ୪୦ ଭିତରେ । ଲକ୍ଷ୍ମଣ ନାୟକ ସମସ୍ତଙ୍କୁ ମୁହାଁକରି ଛିଡ଼ା ହେଲେ । ହାତରେ ଧରିଥିବା ତିରଙ୍ଗା ପତାକାକୁ ବାଡ଼ିରେ ପୁରାଇ ବାଡ଼ିଟିକୁ ପୋତିଦେଲେ ମାଟିରେ । ତାକୁ ନମସ୍କାର କରି କହିଲେ, "ଭାରତମାତାକି ଜୟ ।" ସମସ୍ତେ ଦୋହରାଇଲେ ସେଇ କଥା । ଗଗନ ପବନ ସାରା ଖେଳିଗଲା ଏହାର ଧ୍ୱନି ।

ତାପରେ ସେ ସମସ୍ତଙ୍କୁ ଶୁଣାଇ ବଡ଼ପାଟିରେ କହିଲେ, "ଭାଇମାନେ, ତମେ ସବୁ ତମର ଡାହାଣି ଗୋଡ଼ (ଡାହାଣ ଗୋଡ଼) ଆଗକୁ ବାହାର କରି ପକାଅ । ଏ ପାଦ ସ୍ୱରାଜ ପାଇଲା ପର୍ଯ୍ୟନ୍ତ ଆଉ ପଛକୁ ଫେରିବ ନାହିଁ । ଆଗରେ ଯେତେ ଦୁଃଖ ଅଛି ସବୁ ସହିବାକୁ ହେବ । ଡରିଗଲେ ଲଢ଼ିହେବ ନାହିଁ । ଯେଉଁମାନେ ଏକଥା ମାନିବାକୁ ରାଜି, ସେମାନେ ରହନ୍ତୁ । ଯାହାକୁ ଡ଼ର ଲାଗୁଛି ସେ ଚାଲିଯାନ୍ତୁ ।"

ସମସ୍ତେ ନୀରବ, ନିଶ୍ଚଳ । କେହି ହଲିଲେ ନାହିଁ ନିଜ ଠିଆହେବା ଜାଗାରୁ ।

ତା ପରବର୍ତ୍ତୀ କାର୍ଯ୍ୟକ୍ରମ ଘୋଷଣା କରି ଲକ୍ଷ୍ମଣ ନାୟକ ଧୀର ଗମ୍ଭୀର ସ୍ୱରରେ କହିଲେ, "ଆମେ ଥାନା ଆଗରେ ଗୋଟେ ସଭା କରିବା । ଆମକୁ ବନ୍ଦୀ କଲାଯାଏ ସେଠି ରହିବା । ପୋଲିସ ଆମକୁ ମାରିପାରେ, ଅତ୍ୟାଚାର କରିପାରେ । ଏହା ନିଶ୍ଚେ ହେବାଟା ହେବ । ଆମେ ହାତ ଉଠାଇବା ନାହିଁ । ଗାନ୍ଧୀ ମହାପ୍ରଭୁ ଏଇ କଥା କହିଛନ୍ତି ।"

ତାପରେ ମହୁରୀ, ଢୋଲ, ମାଦଳ, ନାଗରାର ନିନାଦରେ ସେମାନେ ବାହାରିଲେ ହାଟପଦାରୁ ଥାନା ଆଡ଼କୁ । ଆଗରେ ଲକ୍ଷ୍ମଣ ନାୟକ । ପଛରେ ବଳରାମ ପୂଜାରୀ, ବନସିଂ ପୂଜାରୀ, ଲିଙ୍ଗ ଭୂମିଆ, ନକୁଳ ମାଡ଼କାମି ଓ ଶହ ଶହ କର୍ମୀ ।

ହାଟପଦାଠାରୁ ଥାନା ଅଧକିଲୋମିଟର ଦୂର । ଏତିକି ବାଟ ପାରିହେବାକୁ ସେମାନଙ୍କୁ ଲାଗିଗଲା ଅଧଘଣ୍ଟା । ସୂର୍ଯ୍ୟ ପଶ୍ଚିମ ଆଡକୁ ମୁହାଁଇଲେ । ଦିନ ଦୁଇଟା ହେବାକୁ ଯାଉଥିଲା । ସେମାନେ ପହଞ୍ଚିଲେ ଥାନା ଆଗରେ, ମହାତ୍ମାଗାନ୍ଧୀଙ୍କ ଜୟଗାନ କରି ଭାରତମାତାକୁ ବନ୍ଦନାକରି । ଥାନା ଆଗରେ ଅଟକିଗଲା ଏ ଯାତ୍ରା ।

ସେତେବେଳକୁ ଥାନାର ସୁରକ୍ଷା ପାଇଁ ମାଲକାନଗିରି ଓ ଭେଙ୍କଟପଲମ ଥାନାର ପୋଲିସମାନେ ଆସିସାରିଥିଲେ । ସ୍ଥାନୀୟ ସରକାରୀ କର୍ମଚାରୀଙ୍କୁ ମଧ୍ୟ ଏହି କାମରେ ଲଗାଯାଇଥିଲା । ମାଲକାନଗିରିର ଡିଭିଜନାଲ ଇନ୍‌ସପେକ୍ଟର ବି. ଏସ୍. ନନ୍ଦ ଏହା ଦେଖାରଖା କରିବା ପାଇଁ ଆସିଥିଲେ । ତାଙ୍କ ସହିତ ଥିଲେ ଦଳେ ପୋଲିସବାହିନୀ । ଭେଙ୍କଟପଲମ ଥାନାର ସବ୍‌ଇନ୍‌ସପେକ୍ଟର କେ. ରାମମୂର୍ତ୍ତି ଆଗରୁ ପହଞ୍ଚି ଥାନା ସୁରକ୍ଷାର ବନ୍ଦୋବସ୍ତରେ ବ୍ୟସ୍ତ ଥିଲେ । ତାଛଡ଼ା ଅବକାରୀ ସବ୍‌ଇନ୍‌ସପେକ୍ଟର ଏମ୍. ଏ. ରସିଦ, ରାଜସ୍ୱ ଇନ୍‌ସପେକ୍ଟର ନରସିଂହମ, ଫରେଷ୍ଟ ଗାର୍ଡ଼ ରାମେୟା ସେମାନଙ୍କ ଦୁଇଜଣ ଅର୍ଦଳିଙ୍କ ସହିତ ଥାନାରେ ଉପସ୍ଥିତ ଥିଲେ । ସେଦିନ ସକାଳୁ ସବ୍‌ଡେ଼ପୁଟି ମାଜିଷ୍ଟ୍ରେଟ ମୁଜିବର ରହମାନ ପୋଲିସଷ୍ଟେସନରେ ପହଞ୍ଚିଥିଲେ । ସବୁ ବନ୍ଦୋବସ୍ତ ଆସନ୍ନ ଆକ୍ରମଣକୁ ଆଖି ଆଗରେ ରଖି କରାଯାଇଥିଲା ।

ଡିଭିଜନାଲ ଇନ୍‌ସପେକ୍ଟର ବି. ଏସ୍ ନନ୍ଦ ଆନ୍ଦୋଳନକାରୀମାନଙ୍କୁ ଥାନାଠାରୁ ଦୁଇଶହ ମିଟର ଆଗରେ ଅଟକାଇଦେଲେ । ସେ ଆନ୍ଦୋଳନକାରୀମାନଙ୍କୁ ଫେରିଯିବାକୁ କହିଲେ । କଣ କରିବାକୁ ହେବ ସ୍ଥିର କରିନପାରି ସଂଗ୍ରାମୀମାନେ ପୁଣିଥରେ ଫେରିଆସିଲେ ହାଟକୁ । ବି. ଏସ୍. ନନ୍ଦ ଓ ତାଙ୍କ ପୋଲିସ ଦଳ ଏମାନଙ୍କ ପଛରେ ଥିଲେ ।

ହାଟରେ ଆଉଥରେ ସଭାକରି ଲକ୍ଷ୍ମଣ ନାୟକ ଲୋକମାନଙ୍କୁ ଦେଶିଆ ଭାଷାରେ ବୁଝାଇଲେ, "ଭାଇମାନେ ଗାନ୍ଧୀ କହିଛନ୍ତି ଆଜିଠାରୁ ଇଂରେଜମାନେ ଏ ଦେଶ ଛାଡ଼ି ଚାଲିଯିବେ । ଜୟପୁର ବୁଢ଼ାରଜା ମରିଯାଇଲେଣି । ଏଇ ବଣ, ଗଛଲଟା, ଜମିବାଡ଼ି

ଅଧିର ହେବ । ଅନ୍ତ ଗୋଡ଼ ଝଟିବାକୁ ହେବନାହିଁ କି ବେଠି ଝଟିବାକୁ ପଡ଼ିବ ନାହିଁ । ସବୁ ପ୍ରକାର ଟିକସ ଉଠିଯିବ । ଗଛ କାଟିବା ପାଇଁ ମଧ୍ୟ ଟିକସ ପଡ଼ିବ ନାହିଁ । ପୋଲିସଥାନା, ରେଭେନ୍ୟୁ ଅଫିସ ଓ ଅନ୍ୟସବୁ ସରକାରୀ ଅଫିସ ଆମର ହେବ ।

ଅପରାହ୍ନ ଆକାଶରେ ମେଘ । ସୂର୍ଯ୍ୟଙ୍କର ଦେଖାନାହିଁ । ଲକ୍ଷ୍ମଣ ନାୟକ ତାଙ୍କ ସାଥୀମାନଙ୍କ ସହିତ ପ୍ରତିଥରେ ଥାନା ଅଭିମୁଖେ ଚାଲିଲେ । ତାଙ୍କ ସଙ୍ଗେ ସଙ୍ଗେ ଉନ୍ଧଳନାଳ ଇନ୍ସପେକ୍ଟର ବି. ଏସ୍ ନନ୍ଦ ଓ ତାଙ୍କ ଦଳ ମଧ୍ୟ ସେମାନଙ୍କ କାର୍ଯ୍ୟ-କଳାପକୁ ନିୟନ୍ତ୍ରିତ କରିବା ପାଇଁ ଆସିଲେ । ଏମାନେ କଂଗ୍ରେସକର୍ମୀଙ୍କ ହାତରୁ ଥାନାକୁ ରକ୍ଷା କରିବା ପାଇଁ ପଦକ୍ଷେପମାନ ନେଲେ । ଥାନା ଚାରିପଟେ ଯେଉଁ ବାଉଁଶବାଡ଼ କରାଯାଇଥିଲା ଓ ଥାନା ଭିତରକୁ ପଶିବା ପାଇଁ ଦୁଇଟି ରାସ୍ତା ଥିଲା ସେଠାରେ ବନ୍ଧୁକଧାରୀ ପୋଲିସ ଜଗାଇଦେଲେ ।

ଚାଳଘରେ ଥାନାକାମ ହେଉଥିଲା । ଥାନା ନିକଟକୁ ଲାଗି ବଣ । ଥାନାର ସେପଟକୁ ଲାଗି ନାଳଟିଏ ପ୍ରବାହିତ ହେଉଥିଲା, ନାଳ ଉପରେ ବାଉଁଶଡ଼ଆର ପୋଲ । ନାଳ ପାଖରେ ବାଉଁଶବଣ । ବାଉଁଶ ପୋଲ ନିକଟରେ ବି. ଏସ୍. ନନ୍ଦ ଜଗାଇଦେଲେ କେତେଜଣ ପୋଲିସଙ୍କୁ । ନନ୍ଦ ଏବଂ ଦୋରା ଦୁହେଁ ହାତରେ ବନ୍ଧୁକ ଧରି ଓ ଅଣ୍ଟାରେ ପିସ୍ତଲ ଝୁଲାଇ ପଇଁତରା ମାରିଲେ ।

ସ୍ୱାଧୀନତା ସଂଗ୍ରାମୀମାନେ ଥାନା ନିକଟରେ ଲକ୍ଷ୍ମଣ ନାୟକଙ୍କ ସହିତ ତାଳଦେଇ ଯେତେବେଳେ 'ମହାତ୍ମାଗାନ୍ଧୀଙ୍କ ଜୟ' ବୋଲି କହିଲେ ହଜାରେ ଲୋକଙ୍କ କଣ୍ଠରେ ତାହା ପ୍ରତିଧ୍ୱନିତ ହୋଇ ଜଗିଥିବା ପୋଲିସଙ୍କ ମନରେ ଭୟ ଜାତ କଲା । ସଂଗ୍ରାମୀ-ମାନେ ଅହିଂସଭାବେ ତିରଙ୍ଗାପତାକା ଧରି ଥାନା ଭିତରକୁ ପ୍ରବେଶ କରିବା ଉଦ୍ୟମ କରିବା ଫଳରେ ପୋଲିସଦଳ ସେମାନଙ୍କୁ ବାଧା ଦେଲେ । ସଂଗ୍ରାମୀମାନଙ୍କ ଶପଥ ସେମାନେ ଥାନା ଉପରେ ପତାକା ଉଡ଼ାଇବେ । ସଂଗ୍ରାମୀମାନଙ୍କ ନୀତି ଶୁଣି ଶାନ୍ତି ଶୃଙ୍ଖଳା ଦାୟିତ୍ୱରେ ଥିବା ମାଜିଷ୍ଟ୍ରେଟ ମୁଜିବୁର ରହମାନ ଲାଠିମାଡ଼ କରି ସଂଗ୍ରାମୀ-ମାନଙ୍କୁ ଘଉଡ଼େଇ ଦେବା ପାଇଁ ହୁକୁମ ଦେଲେ ।

ପୋଲିସଙ୍କ ନିର୍ମମ ଲାଠିମାଡ଼ରେ ବହୁ ସଂଗ୍ରାମୀ ଆହତ ହେଲେ । କେତେଜଣଙ୍କ ମୁଣ୍ଡ ଫାଟିଲା । କାହାର ହାତ ଭାଙ୍ଗିଲା ତ କାହାର ଗୋଡ଼ ଜଖମ ହେଲା । ସତ୍ୟାଗ୍ରହୀମାନେ ଏସବୁକୁ ଖାତିର ନକରି ଥାନା ପରିସର ଭିତରେ ପ୍ରବେଶ କଲେ । ତଥାପି ସେମାନେ ଅହିଂସ ରହିଥିଲେ ।

ଠିକ୍ ଏମିତି ସମୟରେ ଲକ୍ଷ୍ମଣ ନାୟକଙ୍କୁ ଦେଖି ଯେମିତି ପୋଲିସ ଦେହରେ ନିଆଁ ଲାଗିଗଲା । ଇଏ ସେଇ ଲୋକ ଯାହା ପାଇଁ କି ଏମାନେ ନା ଖାଇ ପାରୁଛନ୍ତି ନା ଶୋଇ ପାରୁଛନ୍ତି । ଆଉ ଛାଡ଼ିବା ହେବ ନାହିଁ ଏଥର । ବହୁଜଣ ପୋଲିସ ମାଡ଼ିବସିଲେ ତାଙ୍କୁ । ମାଡ଼ ମାରି ଘାଇଲା କରିପକାଇଲେ । ତାଙ୍କୁ ଘୋଷାରି ଘୋଷାରି ନେଇ ଗୋଟିଏ ଉଚ୍ଚ ଜାଗାରେ ଛିଡ଼ାକରି ଠେଙ୍ଗାମାଡ଼ରେ ଲହୁଲୁହାଣ କରିଦେଲେ ।

ପ୍ରତିଶୋଧପରାୟଣ ପୋଲିସ ଲକ୍ଷ୍ମଣ ନାୟକଙ୍କ ନଖରେ ନିଆଁ ଲଗାଇଦେଲେ । ଅନ୍ୟ ଜଣେ ପୋଲିସ ଏତେ ଜୋର୍‌ରେ ତାଙ୍କ ମୁଣ୍ଡରେ ଆଘାତ କଲା ଯେ ସେ ଚେତାହରାଇ ତଳେ ପଡ଼ିଗଲେ ।

ଲୋକେ ତାଙ୍କ ପ୍ରିୟ ନେତାଙ୍କର ଏହି ଦୟନୀୟ ଦୁର୍ଦ୍ଦଶା ଦେଖି ମ୍ରିୟମାଣ ହୋଇପଡ଼ିଲେ । ବଳରାମ ପୂଜାରୀ ଯିଏ ଲକ୍ଷ୍ମଣ ନାୟକଙ୍କ ଡାହାଣହାତ ଥିଲେ ସେ ମୂର୍ଚ୍ଛିତ ହୋଇ କାଠ ପାଲଟିଗଲେ ।

ପୋଲିସ ଦ୍ୱାରା ଲକ୍ଷ୍ମଣ ନାୟକଙ୍କ ଏହି ଦଶା ଦେଖି ସଂଗ୍ରାମୀମାନେ ସେ ସ୍ଥାନ ଛାଡ଼ି ଚାଲିଯିବେ; କିନ୍ତୁ ସେମିତି କିଛି ହେଲାନାହିଁ । ଲୋକେ ହଠାତ୍ ବଳରାମ ପୂଜାରୀଙ୍କ ନିର୍ଦ୍ଦେଶରେ ବାଉଁଶବେଣ୍ଟକୁ ଭାଙ୍ଗି ଥାନା ଭିତରକୁ ପଶିଲେ । ଏହି ଧସେଇ ପଶିବା ସମୟରେ ସବ୍‌ଇନ୍‌ସପେକ୍ଟର ରାମମୂର୍ତ୍ତି ଓ କନେଷ୍ଟବଲ ମହାନ୍ତି ତଳେ ପଡ଼ିଗଲେ । ଏହା ପୋଲିସଦଳଙ୍କର ମର୍ଯ୍ୟାଦାର ପ୍ରଶ୍ନ ହୋଇଉଠିଲା । ସେମାନେ ହଠାତ୍ ରାଗିଯାଇ ଅନ୍ଧଭାବରେ ନିରସ୍ତ୍ର ଜନତା ଉପରେ ଗୁଳି ଚଳାଇବାକୁ ଲାଗିଲେ, ଏପରିକି ଜଗାନାଇକୁଲୁ ଦୋରା ନିଜ ପିସ୍ତଲରୁ ମଧ୍ୟ ଉନଅର ଗୁଳି ଚଳାଇଥିଲେ । ବନ୍ଧୁକର ଶବ୍ଦ, ଲୋକଙ୍କ ଆର୍ତ୍ତନାଦ, ଏକ ଅସ୍ୱାଭାବିକ ପରିସ୍ଥିତି ସୃଷ୍ଟି କଲା ।

ଏହି ସମୟରେ ଟିମସଗୁଡ଼ାର ଲିଙ୍ଗ ଭୂମିଆ ହାତରେ ତିରଙ୍ଗା ପତାକା ଧରି ଥାନା ଉପରକୁ ଉଠିଲେ । ବନ୍ଦେ ମାତରଂ ଧ୍ୱନି ଦେଇ ପତାକା ବାନ୍ଧିଲାବେଳକୁ ପୋଲିସର ଗୋଟିଏ ଗୁଳି ତାଙ୍କ ଛାତି ଉଡ଼ାଇଦେଲା । ସେ ଚିତ୍କାରକରି ପତାକା ସମେତ ଉପରୁ ତଳକୁ ଖସିପଡ଼ିଲେ । ଏହା ଦେଖି ସର୍ଗିଗୁଡ଼ାର ନକୁଳ ମାଡ଼କାମି ସେଇ ପତାକାଟିକୁ ଉଠାଇନେଇ ଥାନା ଉପରେ ଚଢ଼ିବା ସମୟରେ ପୋଲିସ ଗୁଳି ତାଙ୍କ ଛାତି ଭେଦ କଲା । ସେଇଠି ସେ ଢଳିପଡ଼ିଲେ । ସ୍ୱାଧୀନତାର ବଳିବେଦୀରେ ହସି ହସି ପ୍ରାଣ ଦେଇଦେଲେ ଏହି ଦେଶପ୍ରେମୀ ଦୁଇ ବୀର ସଂଗ୍ରାମୀ । ପ୍ରାଣ ଗଲାବେଳକୁ କେବଳ ଶୁଭୁଥିଲା 'ଭାରତ ମାତାଙ୍କ ଜୟ' । ପୂର୍ବ ସଂସ୍କାରର ମହନୀୟ ତପସ୍ୟାର ଫଳଥିଲା ଯେମାନଙ୍କ ପାଇଁ ଏହି ସହିଦତ୍ୱ । ଇତିହାସ ଆଦରିନେଲା ଏ ଦୁହିଁଙ୍କୁ ନିଜ କୋଳରେ ଧନ୍ଦୁଦନ ରଖିନେବାକୁ ।

ସରକାରୀ ରିପୋର୍ଟରେ ଏହି ଗୁଳିକାଣ୍ଡରେ ୫ ଜଣ ମରିଥିବାର କୁହାଗଲେ ମଧ୍ୟ ବହୁ ବ୍ୟକ୍ତି ମରିଥିଲେ ବୋଲି ବହୁ ପ୍ରତ୍ୟକ୍ଷଦର୍ଶୀ କହନ୍ତି । ଆଉ ଯେଉଁମାନେ ଏମିତି ବୀରତ୍ୱପୂର୍ଣ୍ଣ ମୃତ୍ୟୁକୁ ଆଲିଙ୍ଗିଥିଲେ ସେମାନେ ହେଲେ ମଣ୍ଡରାଗୁଡ଼ାର ସମରାୟ ନାୟକ, କଆଙ୍ଗ ଗାଁର କନା ସାନଝଁରିଆ, ସାନଗୁମ୍ମାର ଗୋପି ପୂଜାରୀ ଓ ଟମୁରୁ-ପାଲିର ବଳରାମ ଭୂମିଆ, ବଢ଼ିଣିଆ ସାଣ୍ଟର ଉଦୟନାଥ ଓଡ଼ି ଓ ଟିମସପୁରର ଗୁରୁକୋଟିଆ । ଏମାନଙ୍କ ବଳିଦାନର ପଟାନ୍ତର ନାହିଁ । ତା'ଛଡ଼ା କୁଜ୍‌ରାଗୁଡ଼ାର ଅର୍ଜୁନ କୁଟିଆ ଓ କୁଆଗୁଡ଼ା ନରସିଂହ ତମ୍ବ ଗୁଳିମାଡରେ ଭୀଷଣ ଆଘାତ ପାଇ ହସ୍‌ପିଟାଲରେ ମୃତ୍ୟୁବରଣ କଲେ । ଲକ୍ଷ୍ମଣ ନାୟକଙ୍କ ଶଳା ବନସିଂ ପୂଜାରୀଙ୍କ ହାତ

ଲଠିମାଡ଼ରେ ଭାଙ୍ଗିଗଲା । ଏମିତି ଏକ ବର୍ଣ୍ଣନାତୀତ ଅତ୍ୟାଚାରର ଭିତରେ ଅଫିମ ନିଶାରେ ଜ୍ଞାନ ହରାଇ ଜଣେ ଫରେଷ୍ଟ ଗାର୍ଡ଼ ରାମେୟା ଏପଟରୁ ସେପଟକୁ ବାଡ଼ି ଧରି ଦଉଡ଼ୁଥିବାବେଳେ ପୁଲିସ ଗୁଳିରେ ସେ ଢଳିପଡ଼ିଲା ।

ରାମେୟାର ମୃତ୍ୟୁ ପାଇଁ ପୋଲିସ ଦାୟୀକଲା ଲକ୍ଷ୍ମଣ ନାୟକ ଓ ବଳରାମ ପୂଜାରୀଙ୍କୁ । ରକ୍ତରଞ୍ଜିତ ମାଥିଲିର ମାଟି ହୋଇଗଲା ମହାମାନବର ବଳିଦାନର ଧାରକା ଚନ୍ଦନ ପାଇଁ ।

ସନ୍ଧ୍ୟା ହେଲା । ମାଥିଲି ହୋଇଗଲା ଶୂନ୍‌ଶାନ୍ । ଯେଉଁମାନେ ମଲେ ପଡ଼ିରହିଲା ତାଙ୍କ ଶବ । ଯେଉଁମାନେ ଅହତ ହେଲେ ସେ ସ୍ଥାନ ଛାଡ଼ି ଆଶ୍ରୟ ଖୋଜିଗଲେ । ଯେଉଁମାନେ ଉଠିପାରିଲେ ନାହିଁ କରୁଣ ଚିତ୍କାର କରି ସେମିତି ପଡ଼ିରହିଲେ । ଝିପିଝିପି ବର୍ଷା ହେଉଥିଲା ସେତେବେଳକୁ । ଲକ୍ଷ୍ମଣ ନାୟକ ସେମିତି ମୂର୍ଚ୍ଛିତ ହୋଇ ପଡ଼ିରହିଥିଲେ ।

କିଛି ସମୟ ପରେ ପୋଲିସ ଦୁଇଜଣ ତାଙ୍କ ମୂର୍ଚ୍ଛିତ ଦେହକୁ ମୃତ ମନେକରି ଆଣି ଫୋପାଡ଼ି ଦେଲେ ଥାନା ପାଖ ବାଉଁଶବଣ ଦେଇ ବହିଯାଉଥିବା ନାଳ ଭିତରେ । ପାଖରେ ପକାଇଦେଲେ ରାମେୟାର ମୃତ ଦେହକୁ । ସେମାନେ ଆଶ୍ୱସ୍ତ ହେଲେ ଯାହେଉ ଏତେ ଦିନକେ କଣ୍ଟାଗଲା ବୋଲି । ରାତିର ଅନ୍ଧକାର । ବିଲୁଆଙ୍କ ହୁକେ ହୋ, ପବନର ମର୍ମର, ବର୍ଷୁଥିବା ମେଘ ଯେମିତି ସେ ରାତୀର ଭୟଙ୍କରତାକୁ ମୂର୍ତ୍ତ କରିଦେଉଥିଲା ।

ହେମାଳ ପାଣିର ସ୍ପର୍ଶରେ କେତେବେଳ ପରେ ଚେତା ଫେରିଲା ଲକ୍ଷ୍ମଣ ନାୟକଙ୍କର । ଦେହସାରା ତୀବ୍ର ପୀଡ଼ା, ମୁହଁରେ ବନ୍ଧୁକକୁନ୍ଦାର ଆଘାତକୁ ନେଇ ବହୁକଷ୍ଟରେ ସେ ଉଠିବସିଲେ ନାଳରୁ । ଉପରକୁ ଘୋଷାରି ହୋଇ ଚଢ଼ିଲେ । ଦୂରରୁ ଦିଶୁଥିଲା ମାଥିଲି ଥାନା ପ୍ରେତପରି ଭୟଙ୍କର । ସେ ଆଉ ସେଠାକୁ ଯିବାକୁ ଉଚିତ ମନେକଲେନାହିଁ । ବଣ ଭିତରେ ଅନ୍ଧକାରର ବକ୍ଷଚିରି ସେ ଚାଲିଲେ ଜୟପୁର ଦିଗରେ । ସେ ଗାଁକୁ ଫେରିବାକୁ ମନକଲେ ନାହିଁ । ସେତେବେଳଯାଏଁ ସେ ଜାଣିପାରିନଥିଲେ ଲିଙ୍ଗ ଭୁମିଆର ବଳିଦାନ, ନକୁଲ ମାଡ଼କାମୀର ତ୍ୟାଗ, ଜାଣିପାରି-ନଥିଲେ ସମରାୟ ନାୟକ, ଉଦୟନାଥ ଓଡ଼ିର ପ୍ରାଣପାତ ।

ମାଥିଲିରୁ ଜୟପୁର ଥିଲା ବଣରାସ୍ତାରେ ୭୫ ମାଇଲ ।

## ୧୪ । ଅନ୍ୟାୟ ବିଚାରର କାଠଗଡ଼ାରେ

୨୧ । ୮ । ୧୯୪୨ର ଉଦ୍‌ବେଳନ ଥମିଗଲା । ଯେଉଁମାନେ ମାଟିମା ପାଇଁ ପ୍ରାଣ ଦେଲେ ସେମାନଙ୍କପାଇଁ କୋରାପୁଟ ଜିଲ୍ଲା ଗର୍ବକରିବାର ଲଗ୍ନ ଆସିଗଲା । ୨୨।୮।୧୯୪୨

ସକାଳେ ନାଳରେ ଲକ୍ଷ୍ମଣ ନାୟକଙ୍କ ଦେହ ନଦେଖି ପୋଲିସ କନେଷ୍ଟବଲ ଭୟରେ କଡ଼ସଡ଼ ହୋଇ ଜଗା ନାଇକୁଲୁ ଦୋରାଙ୍କୁ ସୂଚନାଦେଲା । ପୋଲିସକୁ ସୁବିଧା ମିଳିଗଲା । ଯଦି ଲକ୍ଷ୍ମଣ ନାୟକ ବଞ୍ଚିରହିଥାନ୍ତି ତାହେଲେ ଫରେଷ୍ଟ ଗାର୍ଡ଼ର ମୃତ୍ୟୁପାଇଁ ତାଙ୍କୁ ଦାୟୀକରି ତାଙ୍କର ମୃତ୍ୟୁଦଣ୍ଡ ଦିଆଯାଇପାରିବ । ଏହି କଳ୍ପନାଜଳ୍ପନାରେ ସେ ରାମେସ୍ୱାର ମୃତ୍ୟୁ ସମ୍ବନ୍ଧୀୟ ରିପୋର୍ଟ ଓ ମାଥିଲି ଥାନା ରେଜିଷ୍ଟରର ଜବରଦସ୍ତି ଲେଖି ଥାନାର କେସ ସଂଖ୍ୟା ୫୦/୪୨ ତାରିଖ ୨୧ । ୮ । ୧୯୪୨ରେ ଦରଜ କଲା ଏବଂ ଲକ୍ଷ୍ମଣ ନାୟକଙ୍କୁ ରାମେସ୍ୱାର ମୃତ୍ୟୁପାଇଁ ଗିରଫ ପରୱାନା ବାହାରକଲା ।

ଜଗା ନାଇକୁଲୁ ଦୋରା ମାଥିଲିର ଡାକ୍ତରଙ୍କୁ ପ୍ରଭାବିତ କରି ରିପୋର୍ଟ ଲେଖାଇ-ନେଲା ଯେ ରାମେସ୍ୱାର ମୃତ୍ୟୁ ଠେଙ୍ଗାମାଡ଼ରେ ହୋଇଛି ଏବଂ ଏହା ଲକ୍ଷ୍ମଣ ନାୟକ ଓ ବଲରାମ ପୂଜାରୀଙ୍କ ଠେଙ୍ଗାମାଡରେ ହୋଇଛି ବୋଲି ପୋଲିସ ଜମାନବନ୍ଦୀରେ ଲେଖାଇନେଲେ । କେତେକ ଚୌକିଦାର, ସବ୍‌ଡିଭିଜନାଲ ଇନ୍‌ସ-ପେକ୍ଟର ବି. ଏସ୍. ନନ୍ଦ, କେ. ରାମମୂର୍ତ୍ତି, କନେଷ୍ଟବଲ ମହାନ୍ତି ଏହା ନିଜ ଆଖିରେ ଦେଖିଥିବାର ସାକ୍ଷ୍ୟ ଦେଲେ । ସମସ୍ତ ପୋଲିସ କୌଶଳ ଖଟାଇ ଜଗା ନାଇକୁଲୁ ଦୋରା ଲକ୍ଷ୍ମଣ ନାୟକଙ୍କୁ ନରହତ୍ୟା ଅପରାଧରେ ଅଭିଯୁକ୍ତ କରି ରିପୋର୍ଟ ପ୍ରସ୍ତୁତ କଲେ ଏବଂ ଅଦାଲତକୁ ଯିବା ପାଇଁ ପ୍ରସ୍ତୁତ ହେଲେ ।

ଏଣେ ୨୨ । ୮ । ୧୯୪୨ ରାତି ଏଗାରଟା ବେଳକୁ ବହୁତ କଷ୍ଟ ସହି ଲକ୍ଷ୍ମଣ ନାୟକ ଜୟପୁର କଂଗ୍ରେସଭବନ ନିକଟରେ ପହଞ୍ଚିଲେ । କଂଗ୍ରେସଭବନରେ କେହି ନଥିଲେ । ରାତିର ସେଇ ନୀରବ ପ୍ରହରରେ ଜଣେ କଂଗ୍ରେସକର୍ମୀ ତାଙ୍କୁ ଦେଖି, ଦୁରବସ୍ଥା ଜାଣି ନିଜ ଘରକୁ ନେଇ ଉପର ମହଲାର ଗୋଟିଏ କୋଠରିରେ ତାଙ୍କୁ ରଖାଇଲେ । ଜୟପୁରର ଜଣେ ବିଶିଷ୍ଟ କଂଗ୍ରେସକର୍ମୀ ବଳଭଦ୍ର ପୂଜାରୀଙ୍କୁ ଖବର ଦେଲେ । ବଳଭଦ୍ର ପୂଜାରୀ ଆସି ସବୁ ଶୁଣିଲେ । ସେତେବେଳେ ଜୟପୁର କଂଗ୍ରେସକର୍ମୀଙ୍କ ଉପରେ ପୋଲିସର ଅତି କଡ଼ାନଜର । ବଳଭଦ୍ର ପୂଜାରୀ ଲକ୍ଷ୍ମଣ ନାୟକଙ୍କୁ ଜୟପୁର ସହର ଛାଡ଼ି ଚାଲିଯିବା ପାଇଁ କହିଲେ ଆଉ ପୋଲିସ ହାତରେ ଧରାନପଡ଼ି କିଛିଦିନ ବଣରେ ଲୁଚିରହିବାକୁ ପରାମର୍ଶ ଦେଲେ । ଦୁଇଦିନ ପରେ ଟିକିଏ ସାଷ୍ଟାମ ହୋଇ ଲକ୍ଷ୍ମଣ ନାୟକ ରାତିର ଅନ୍ଧକାର ଭିତରେ ଜୟପୁର ଛାଡ଼ି ଚାଲିଲେ ତେନ୍ତୁଳିଗୁମ୍ମା ଆଡ଼େ ।

୨୨ । ୮ । ୧୯୪୨ ତାରିଖଠାରୁ ୨୮ । ୮ । ୧୯୪୨ ଏଇ ସାତଦିନ ଯେମିତି ତେନ୍ତୁଳିଗୁମ୍ମା ଗାଁର ଲୋକଙ୍କ ପାଇଁ ରକ୍ତରେ ଗାଧୋଇବାର ଦିନ ହେଲା । ପୋଲିସର ସେତିକି ରାଗ ଏଇ ଗାଁଲୋକଙ୍କ ଉପରେ । ସରକାରୀ ପୋଲିସ ଓ ଜୟପୁର ରାଜାଙ୍କର ପାଇକମାନେ ବହୁସଂଖ୍ୟାରେ ଏହି ଗାଁକୁ ଆସି ଅମାନୁଷିକ ଅତ୍ୟାଚାର କଲେ । ଯେଉଁମାନେ କଂଗ୍ରେସର କାମକୁ ଓ କର୍ମୀମାନଙ୍କୁ ସମର୍ଥନ କରୁଥିଲେ ସେମାନଙ୍କୁ ଖୋଜି କୋରଡ଼ାରେ ମାଡ଼ ମାରି ପିଠି ଫଟାଇ ଦିଆଗଲା । ଥାନାକୁ ଘୋଷାଡ଼ି

ଘୋଷାଡ଼ି ନେଇ ଭୀଷଣ ମାଡ଼ ମାରି ଦରମଲା ଅବସ୍ଥାରେ ସେମାନଙ୍କୁ ଥାନା ଭିତରେ ଥିବା ଗଛମାନଙ୍କରେ ବାନ୍ଧି ଦିଆଗଲା । ଶ୍ରାବଣର ଘନଘୋର ବର୍ଷାକୁ ସାରି ରାତି ସେମାନେ ଖୋଲାଦେହରେ ସହିଥିଲେ । ଅସହ୍ୟ କଷ୍ଟ ଓ ଦୁଃଖ ତେନ୍ତୁଳିଗୁମ୍ମାର ଲୋକେ ଭୋଗିଲେ । ଯେଉଁଠି କଂଗ୍ରେସିଆଙ୍କୁ ଦେଖିଲେ ମାଡ଼ରେ ମୁଣ୍ଡ ଫଟାଇଲେ । ହାଣ୍ଡି ଲଗାଇ ଠିଆ ଧାନଗଛ କୁଦାଇଦେଲେ । ନିର୍ଦ୍ଦୋଷଲୋକଙ୍କ ନାମରେ ମିଛ କେସ୍‌ମାନ ପୋଲିସ କଲେ । ଏମିତିକି ହସ୍‌ପିଟାଲରେ ଗୁଳିମାଡ଼ ଖାଇ ମୁମୂର୍ଷୁ ଅବସ୍ଥାରେ ପଡ଼ିଥିବା ଅର୍ଜୁନ କୁଟିଆ ଓ ନରସିଂହ ଡ଼ମ୍ବୁଠାରୁ ପୋଲିସ ମାଜିଷ୍ଟ୍ରେଟଙ୍କ ଉପସ୍ଥିତିରେ ମରଣକାଳୀନ ଜମାନବନ୍ଦୀ ଲେଖାଇନେଲେ ଯେ, ସେମାନେ ଲକ୍ଷ୍ମଣ ନାୟକଙ୍କ କଥାରେ ପଡ଼ି ମାତିଲି ଥାନା ପୋଡ଼ିବାକୁ ଆସିଥିଲେ ।

ଜେଲରେ ଥାଇ ମଧ୍ୟ ଲକ୍ଷ୍ମଣ ନାୟକ ନିଜ ପ୍ରିୟ ବନ୍ଧୁ କୁଟୁମ୍ବ, ଗାଁ ଲୋକଙ୍କ କଥା ଶୁଣି ଦୁଃଖରେ ମ୍ରିୟମାଣ ହୋଇପଡ଼ିଲେ । ତାଙ୍କ ପାଇଁ ସମସ୍ତେ ଦୁଃଖ ପାଇବେ ଏହା ସେ ସହିପାରିଲେ ନାହିଁ । କିଛି ଗୋଟାଏ ପ୍ରତିକାରର ବ୍ୟବସ୍ଥା କରିବା ପାଇଁ ସେ ୨୮ । ୮ । ୧୯୪୨ରେ ନିଜ ଗାଁକୁ ଫେରିଆସିଲେ । ନିଜ ପ୍ରିୟଲୋକଙ୍କୁ ଦେଖି ତେନ୍ତୁଳି-ଗୁମ୍ମାର ଲୋକେ ଭୁଲିଗଲେ ସବୁ ଦୁର୍ଦ୍ଦଶା ଓ ଅତ୍ୟାଚାର । ପୁଣି ସକାଳ ହେଲା । ପୁଣି ସେମିତି ଲକ୍ଷ୍ମଣ ନାୟକ ସକାଳୁ ଉଠି ଶୌଚ ହୋଇ ସର୍ବଧର୍ମ ପ୍ରାର୍ଥନା କରି ଘଣ୍ଟାଏ ସୂତା କାଟିଲେ । 'ବୈଷ୍ଣବଜନ ତୋ' ଭଜନ ଗାଇଲେ ।

ଏଣେ ନରହତ୍ୟା ଅଭିଯୋଗରେ ଲକ୍ଷ୍ମଣ ନାୟକଙ୍କୁ ଖୋଜା ଚାଲିଲା । ମାତିଲି ଥାନା ଅଧିକାରୀ ଜାଣିବାକୁ ପାଇଲେ ଲକ୍ଷ୍ମଣ ନାୟକ ଗାଁରେ ଅଛନ୍ତି । ସେଦିନ ସେପ୍‌ଟେମ୍ବର ମାସ ୨ ତାରିଖ ୧୯୪୨ ମସିହା । ସକାଳ ଗାଈଗୋରୁ ଫିଟାଦେଲା । ଲକ୍ଷ୍ମଣ ନାୟକ ସୂତା କାଟିସାରି ମଣ୍ଡପରେ ବସିଛନ୍ତି ପୋଲିସ ଗାଁ ଘେରାଓ କରିବାର ଶୁଣିଲେ । ସେ ବିଚଳିତ ହେଲେ ନାହିଁ । ପୋଲିସ ଆସି ତାଙ୍କୁ ଗିରଫକରି ପରଓ୍ୱାନା ଦେଖାଇଲା । ସେ ହାତ ବଢ଼ାଇଦେଲେ । ତାଙ୍କ ସ୍ତ୍ରୀ ମଙ୍ଗୁଳି ଏହା ଦେଖି ନିର୍ବାକ ହୋଇଗଲେ । ଲକ୍ଷ୍ମଣଙ୍କ ପୁଅ ରଘୁନାଥଙ୍କୁ ମଧ୍ୟ ଗିରଫ କରାଗଲା । ପରେ ୩୦ ଟଙ୍କା ଲାଞ୍ଚନେଇ ପୋଲିସ ରଘୁନାଥଙ୍କୁ ଛାଡ଼ିଦେଲା । ପୋଲିସ ଯେତେବେଳେ ହାତକଡ଼ି ପକାଇ ଅଣ୍ଟାରେ ଦଉଡ଼ି ବାନ୍ଧି ଏମାନଙ୍କୁ ତେନ୍ତୁଳିଗୁମ୍ମାର ଗାଦାଣ୍ଡିରେ ଚଲାଇ ଚଲାଇ ନେଲା, ସାରା ଗାଁଲୋକଙ୍କ ଆଖିରୁ ଝରିଲା ଅବିଶ୍ରାନ୍ତ ଲୁହର ଶ୍ରାବଣ । କାନ୍ଦବୋବାଳିରେ ଉଚ୍ଛୁଳି ଉଠିଲା ଗାଁ । ଏହା ଶେଷ ଅଶ୍ରୁଳ ବିଦାୟ ହୋଇଗଲା ଲକ୍ଷ୍ମଣଙ୍କ ପାଇଁ । ଏହାପରେ ସେ ଆଉ ଗାଁକୁ ଫେରିଲେ ନାହିଁ ।

ତାପରେ ଗିରଫଦାରିର ପର୍ବ ଚାଲିଲା । ବହୁ କଂଗ୍ରେସକର୍ମୀ ଧରାହେଲେ । ଲକ୍ଷ୍ମଣ ନାୟକଙ୍କ ସହିତ ଆଉ ୪୩ ଜଣଙ୍କୁ ପୋଲିସ ଜୟପୁର ଥାନାକୁ ପଠାଇଦେଲେ ମାତିଲି ଥାନାରୁ । ମାତିଲି ଥାନାର କେସ୍ ସଂଖ୍ୟା ୪୮/୧୯୪୨ ମସିହା ଅନୁସାରେ ଭାରତୀୟ ପିଙ୍ଗଲ ଆଇନ (ଦଣ୍ଡ ସଂହିତା)ର ୩୦୨, ୧୪୮, ୧୪୯, ୧୨୦-ଖ, ୩୨୩,

୩୨୫ ଦଫାମାନରେ ଏମାନଙ୍କୁ ନରହତ୍ୟା, ଥାନା ଆକ୍ରମଣ, ସରକାରୀ କର୍ମଚାରୀଙ୍କ କର୍ତ୍ତବ୍ୟରେ ବାଧାଦାନ, ଥାନା ଲୁଣ୍ଠନ କାରଣରେ ଅଭିଯୁକ୍ତ କରାଯାଇଥିଲା । ଏମାନଙ୍କୁ ବିଚାର କଲାବେଳେ ପୋଲିସ ୩୩ ଜଣ ସାକ୍ଷୀଙ୍କୁ ହାଜର କରିବା ପାଇଁ ବ୍ୟବସ୍ଥା କଲା ।

ଦେଶପାଇଁ, ଜାତିପାଇଁ, ସ୍ୱାଧୀନତା ପାଇଁ ଲଢ଼ୁଥିବାଲା ଲକ୍ଷ୍ମଣ ନାୟକ ଓ ତାଙ୍କର ୫୩ ଜଣ ସହକର୍ମୀ ଅନ୍ୟାୟ ବିଚାରର କାଠଗଡ଼ାରେ ଛିଡ଼ାହେବା ସେମିତି ବଧି ନର୍ଦ୍ଦେଶ ଥିଲା ।

# ୧୫ । କେମିତି ସେ ଅନ୍ଧ ବିଚାର

ମିଛକୁ ସତକରି ଦେଖାଇପାରିଲେ ତାହା ସତ ମାନନ୍ତି ଲୋକେ । ତିନି ଧୂର୍ତ୍ତରେ ଛେଳି କୁକୁର ପାଲଟିବାର କାହାଣୀ ଆମେ ଜାଣୁ । ସେନା ମଧ୍ୟରେ ବଳୁ ସୃଷ୍ଟିକରିବାରେ ପୋଲିସ ବେଶୀ ପାରିବାର ବୋଲି ଖ୍ୟାତି ଅଛି । ଏଣୁ ମାଥିଲି ପୋଲିସ ସବ୍‌ଇନ୍‌ସ-ପେକ୍ଟର ଜଗା ନାଇକୁଲୁ ଦୋରା ଲକ୍ଷ୍ମଣ ନାୟକ ଓ ତାଙ୍କ ସହକର୍ମୀଙ୍କ ବିରୁଦ୍ଧରେ ନାନା ଦଫାରେ ଅଭିଯୋଗ ପତ୍ର ଦାଏର କରି ଫୌଜଦାରୀ ମୋକଦ୍ଦମା ଠିଆ କରାଇଲେ ।

ଲକ୍ଷ୍ମଣ ନାୟକ ଓ ଅନ୍ୟ ୫୩ ଜଣ ଅଭିଯୁକ୍ତ ସଂଗ୍ରାମୀଙ୍କ ନାମରେ ହତ୍ୟା, ଲୁଣ୍ଠନ ଓ ହିଂସ୍ର ଆକ୍ରମଣ ଅଭିଯୋଗରେ କୋରାପୁଟ ସବ୍‌ଡେପୁଟି କଲେକ୍ଟର ସୋମନାଥ ମିଶ୍ରଙ୍କ ଇଜଲାସ୍‌ରେ ପେସ୍ କରାଗଲା । ସୋମନାଥ ମିଶ୍ର ପ୍ରଥମ ଶୁଣାଣି କରି ପୋଲିସ ଦେଇଥିବା ସାକ୍ଷୀଙ୍କର ସାକ୍ଷ୍ୟନେଇ ମୋକଦ୍ଦମାରେ କିଛିଟା ସତ୍ୟାସତ୍ୟ ଅଛି ବୋଲି ନିଷ୍ପତ୍ତି ନେଲେ ଓ ଏହି ମୋକଦ୍ଦମା ସେସନ୍‌ସ କୋର୍ଟକୁ ବିଚାରପାଇଁ ପଠାଇଦେଲେ ।

ଲକ୍ଷ୍ମଣ ନାୟକ ଓ ୫୩ ଜଣଙ୍କ ବିଚାର ତତ୍‌କାଳୀନ ସରକାରୀ ସେସନ୍‌ସ୍ ଜଜ୍ (ବିଜୁରପଡ଼) ଭି. ରାମନାଥନ୍‌ଙ୍କ ଇଜଲାସରେ କରାଗଲା । ଲକ୍ଷ୍ମଣ ନାୟକ ଓ ବଳରାମ ପୂଜାରୀଙ୍କୁ ଭାରତୀୟ ଦଣ୍ଡ ସଂହିତାର ୩୦୨ ଧାରା ଅନୁସାରେ ଫରେଷ୍ଟ ଗାର୍ଡ଼ ରାମେୟାର ମୃତ୍ୟୁପାଇଁ ଦାୟୀ ବୋଲି ଅଭିଯୁକ୍ତ କରାଯାଇଥିଲା ଏବଂ ଅନ୍ୟମାନଙ୍କୁ ଶାନ୍ତିଭଙ୍ଗ କରିବା, ଲୁଣ୍ଠନ କରିବା, ଲୁଟପାଟ କରିବା ଅଭିଯୋଗରେ ଦାୟୀ କରାଯାଇଥିଲା । ୩୩ ଜଣ ସରକାରୀ ସାକ୍ଷୀ ଲକ୍ଷ୍ମଣ ନାୟକ, ବଳରାମ ପୂଜାରୀ ଓ ଅନ୍ୟମାନଙ୍କ ବିରୁଦ୍ଧରେ ସାକ୍ଷ୍ୟ ଦେଲେ ।

ଯେଉଁମାନେ ସାକ୍ଷ୍ୟଦେଲେ ସେମାନେ ହେଲେ ମାଥିଲି ଥାନାରେ ଉପସ୍ଥିତ ଥିବା ମାଜିଷ୍ଟ୍ରେଟ୍ ମଜିବୁର ରହମାନ, ମାଲକାନଗିରି ସବ୍‌ଡିଭିଜନାଲ ଇନ୍‌ସପେକ୍ଟର ଡି. ଏସ. ନନ୍ଦ, ସବ ଇନ୍‌ସପେକ୍ଟର ଜଗା ନାଇକୁଲୁ ଦୋରା, ସବ୍ ଇନ୍‌ସପେକ୍ଟର

ଜୟପୁର ରଜାଙ୍କ କର୍ମଚାରୀ ଯିଏ ରାଜସ୍ୱ ବିଭାଗରେ ମାଟକରେ ଥିଲେ, ଜଣେ ଅବକାରୀ ସବ୍ ଇନ୍‌ସପେକ୍ଟର ନରସିଂହମ, ପୂର୍ତ୍ତବିଭାଗର ଜଣେ ଅଧିକାରୀ, ମଦ ଦୋକାନୀ ଶଙ୍କରୟା, ହାଟ ଧରିଥିବା କଣ୍ଟ୍ରାକ୍ଟର ନରସିଂହ ମୁଦାଲୀ, ହାଇଦର ବେଗ୍, ଦୁଇଜଣ ସାହୁକାର ଅବଦୁଲ ସାରଖାନ୍ ଓ ମାଧବ ବଳରାମ ତଥା ମାଥିଲି ହସ୍‌ପିଟାଲର ଡାକ୍ତର, କମ୍ପାଉଣ୍ଡର, ଅର୍ଦ୍ଦଳି ଓ ଅବକାରୀ ବିଭାଗର ପିଅନ ।

ସରକାରଙ୍କ ତରଫରୁ ରାଓସାହେବ ଏ ଆପଲସ୍ୱାମୀ ନାଇଡ଼ୁ ଓ ଜୟପୁର ଇଷ୍ଟେଟ ତରଫରୁ ଅଡ୍. ଜଗନ୍ନାଥ ରାଓ ଲକ୍ଷ୍ମଣ ନାୟକ ଓ ଅନ୍ୟମାନଙ୍କ କେସ୍ ଲଢ଼ିଥିଲେ । ଲକ୍ଷ୍ମଣ ନାୟକଙ୍କ କେସ୍ ଲଢ଼ିବା ପାଇଁ କୌଣସି ଓକିଲଙ୍କୁ ନିଯୁକ୍ତ ଦିଆଯାଇନଥିଲା । ସରକାରଙ୍କ ତରଫରୁ ଏହି ଅଭିଯୋଗ ଅଣାଗଲା ଯେ ୨୧ । ୮ । ୧୯୪୨ ତାରିଖ ଲକ୍ଷ୍ମଣ ନାୟକଙ୍କ ଚକ୍ରାନ୍ତରେ ବହୁଲୋକ ହାତରେ ଲଠିଧରି ମାଥିଲି ଥାନା ଲୁଣ୍ଠନ କରିବାକୁ ଆସିଲେ । ସେମାନେ—ଆମେ ପୋଲିସ ଥାନା ପୋଡ଼ିଦେବୁ, ସବୁ ପୋଲିସ-ବାଲଙ୍କୁ ହତ୍ୟାକରିବୁ, ଯିଏ ଆମ ରାସ୍ତାରେ ବାଧା ଦେବ ତାକୁ ପ୍ରାଣରେ ମାରିଦେବୁ, ଆଉ ଯଦି ଆମେ ମାଥିଲି ଥାନା ଲୁଣ୍ଠନରେ ସଫଳ ହେଉ ମାଲକାନଗିରି ଯାଇ ସରକାରୀ ଖଜଣାଖାନା ଲୁଟିକରିବୁ ବୋଲି ସ୍ଲୋଗାନ ଦେଉଥିଲେ ! ମାଜିଷ୍ଟ୍ରେଟ ମଜିବୁର ରହମାନ ଏମାନଙ୍କୁ ଥାନା ଛାଡ଼ି ଚାଲିଯିବା ପାଇଁ ଯେତେ ବୁଝାଇଲେ ମଧ୍ୟ ଶୁଣିଲେ ନାହିଁ ବରଂ ବଳପୂର୍ବକ ଥାନା ଭିତରେ ପଶିବା ପାଇଁ ଚେଷ୍ଟାକଲେ, ଯାହା ଫଳରେ ପୋଲିସ୍ ସବ୍‌ଇନ୍‌ସପେକ୍ଟର କେ. ରାମମୂର୍ତ୍ତି ଓ ପୋଲିସ କନେଷ୍ଟବଲ ମହାନ୍ତି ଏମାନଙ୍କୁ ଅଟକାଇ ଲଠିମାଡ଼ରେ ଆହତ ହେଲେ । ଏଣୁ ପୋଲିସ ବାଧ୍ୟହୋଇ ଲଠି ଚାଳନାର ଆଦେଶ ଦେଲେ । ଏମାନେ ବହୁ ସଂଖ୍ୟାରେ ଥିବାରୁ ପୋଲିସ ଅସହାୟ ହୋଇପଡ଼ିବାରୁ ପୋଲିସ ଥାନା ଘେରାଓ କରିବାକୁ ଆସିଥିବା ଲୋକଙ୍କଦ୍ୱାରା ମାଡ଼ ଖାଇ ରକ୍ତାକ୍ତ ହେଲେ । ଠିକ୍ ଏହି ସମୟରେ ବଳରାମ ପୂଜାରୀ ହାତରେ ଲଠିଧରି ଫରେଷ୍ଟ ଗାର୍ଡ ରାମେୟା ନିକଟକୁ ଯାଇ ତା ବେକର ଡାହାଣପଟେ ଜୋର୍‌ରେ ପାହାରେ ପକାଇଲା । ଠିକ୍ ତା'ପରେ ପରେ ଲକ୍ଷ୍ମଣ ନାୟକ ନିଜେ ଧରିଥିବା ଠେଙ୍ଗାରେ ରାମେୟାର ମୁଣ୍ଡରେ ଏତେ ଜୋର୍‌ରେ ଆଘାତକଲେ ଯେ ଆର୍ତ୍ତଚିତ୍କାର କରି ସେ ତଳେ ପଡ଼ିଗଲା ଆଉ ଏହି ଆଘାତରେ ତାହାର ମୃତ୍ୟୁ ଘଟିଲା । ଥାନା ଘେରାଓ ଓ ଲୁଣ୍ଠନ କରିବାକୁ ଆସିଥିବା ଲୋକମାନେ ଏପରି ହିଂସାକାଣ୍ଡ କରିବା ଫଳରେ ମାଜିଷ୍ଟ୍ରେଟ ମଜିବୁର ରହମାନ ବିଶୃଙ୍ଖଳିତ ଜନତାକୁ ସତର୍କ କରାଇଦେଇ ବାଧ୍ୟ ହୋଇ ଗୁଳି ଚଳେଇବାକୁ ଆଦେଶଦେଲେ ।

ରାମେୟାର ମୃତ୍ୟୁଘଟଣା ନିଜ ଆଖିରେ ଦେଖିଛି ବୋଲି ଜଗା ନାଇକୁଲୁ ଦୋରା, ମଜିବୁର ରହମାନ ଓ କେ. ରାମମୂର୍ତ୍ତି ବିଚାରପତିଙ୍କ ଆଗରେ କହିଲା ଏବଂ ଜୟପୁର ରଜାଙ୍କ ଅଧୀନରେ କାମ କରୁଥିବା ରେଭେନ୍ୟୁ ଇନ୍‌ସପେକ୍ଟର ନରସିଂହମ ଏହା ସତ୍ୟ ବୋଲି ସ୍ୱୀକାର କଲା ।

ଲକ୍ଷ୍ମଣ ନାୟକ ଏବଂ ତାଙ୍କ ସାଥୀମାନେ ଏହାର ଦୃଢ଼ ପ୍ରତିବାଦ କଲେ । ସେମାନେ ଏମିତି କୌଣସି ହିଂସାକାଣ୍ଡ ଘଟାଇନାହାନ୍ତି ବୋଲି କହିଲେ । ସେମାନେ କେବଳ ଶାନ୍ତିପୂର୍ଣ୍ଣ ଉପାୟରେ ଥାନା ଉପରେ ତିରଙ୍ଗା ପତାକା ଉଡ଼ାଇ ଗିରଫ ହେବାକୁ ଆସିଥିଲେ—ଥାନା ପୋଡ଼ିବା, ଲୁଣ୍ଠନ କରିବା କିମ୍ବା ପୋଲିସମାନଙ୍କୁ ଆଘାତ କରିବାକୁ ସେମାନେ କୌଣସି ଯୋଜନା କରିନଥିଲେ । ଲକ୍ଷ୍ମଣ ନାୟକ କିମ୍ବା ବଳରାମ ପୂଜାରି କେହି ହେଲେ ରାମେୟାକୁ ଆଘାତ କରିନାହାନ୍ତି ବରଂ ଏହା ପୋଲିସର ଏକ ଚକ୍ରାନ୍ତ ବୋଲି ସେମାନେ କହିଲେ ।

କିନ୍ତୁ ବିଚାରପତି ଡ଼. ରାମନାଥନ୍ ଲକ୍ଷ୍ମଣ ନାୟକଙ୍କ କଥାକୁ ମୋଟେ ବିଚାରକୁ ନେଲେନାହିଁ । ସେ ସିଧାସଳଖ ଏହା ଅସତ୍ୟ ବୋଲି ମତଦେଲେ । ସରକାର ତରଫରୁ ଯେଉଁ ସଫେଇ ଦିଆଯାଇଥିଲା, ଯେଉଁ ସାକ୍ଷୀମାନଙ୍କର ସାକ୍ଷ୍ୟ ନିଆଯାଇଥିଲା ସେମାନଙ୍କର ବୟାନକୁ ନଜରରେ ରଖି, ବିଚାରକୁ ନେଇ ସେ ରାୟ ଦିଆଗଲା ।

ସେଦିନ ଥିଲା '୧୩ ତାରିଖ ନଭେମ୍ବର ମାସ ୧୯୪୨ ମସିହା ଦିନ ୧୦ଟା । ବିଚାରପତି ଲକ୍ଷ୍ମଣ ନାୟକ ଓ ସାଥୀମାନଙ୍କୁ ଅଭିଯୁକ୍ତ କରି ରାୟ ଦିଆଗଲା : କି. ରାମେୟାର ମୃତ୍ୟୁ ପାଇଁ ଭାରତୀୟ ଦଣ୍ଡବିଧି ଆଇନର ୩୦୨ ଧାରା ଅନୁଯାୟୀ ମୁଁ ଲକ୍ଷ୍ମଣ ନାୟକଙ୍କୁ ଦୋଷୀ ସାବ୍ୟସ୍ତ କରି ତାଙ୍କୁ ଚରମ ଦଣ୍ଡ ପ୍ରଦାନ କରୁଛି । ତାଙ୍କୁ ଫାଶୀଖୁଣ୍ଟରେ ମୃତ୍ୟୁଯାଏ ଝୁଲାଇବା ପାଇଁ ନିର୍ଦ୍ଦେଶ ଦେଉଛି । ଭାରତୀୟ ପ୍ରତିରକ୍ଷା ଆଇନ ଅନୁଯାୟୀ ସେ ଦୋଷୀ ସାବ୍ୟସ୍ତ ହେଲେ ମଧ୍ୟ ତାଙ୍କ ପାଇଁ ଅନ୍ୟ କିଛି ଦଣ୍ଡ ଦିଆଯାଉନାହିଁ ।

ଅନ୍ୟ ୪୯ ଜଣଙ୍କୁ ଥାନା ଉପଦ୍ରବ ଓ ହିଂସାତ୍ମକ ଆକ୍ରମଣ ପାଇଁ ଭାରତୀୟ ପ୍ରତିରକ୍ଷା ଆଇନ ଅନୁସାରେ ଦୋଷୀ ସାବ୍ୟସ୍ତ କରି ଯାବଜ୍ଜୀବନ କାରାଦଣ୍ଡ ଦିଆଯାଉଛି । ସେଥିରୁ ପ୍ରଥମ ୯ ବର୍ଷ ସେମାନେ ସଶ୍ରମ କାରାଦଣ୍ଡ ଭୋଗିବେ ।

ଲଚ୍ଛମନ ଭୂମିଆ, ଅର୍ଜୁନ ଭୂମିଆ, ସମ୍ବାରୁ ଭୂମିଆ ଓ ସନିଆ ଭୂମିଆଙ୍କ ବିରୁଦ୍ଧରେ କୌଣସି ଅଭିଯୋଗ ପ୍ରମାଣିତ ହୋଇ ନପାରିବାରୁ ସେମାନଙ୍କୁ ମୁକ୍ତିଦିଆଯାଇଛି ।

ବିଚାରପତି ତାଙ୍କ ରାୟରେ ଆଉ ଧାଡ଼ିଏ ଲେଖିଲେ—ଏହି ମୃତ୍ୟୁଦଣ୍ଡ ମାନ୍ୟବର ଉଚ୍ଚ ନ୍ୟାୟାଳୟଙ୍କ ଅନୁମୋଦନ ପରେ କାର୍ଯ୍ୟକାରୀ ହେବ ।

ସେଦିନ କୋରାପୁଟ ଜେଲରେ ଥିବା ସଂଗ୍ରାମୀମାନେ ଲକ୍ଷ୍ମଣ ନାୟକଙ୍କ ମୃତ୍ୟୁଦଣ୍ଡାଦେଶ ଶୁଣି ମୂକପାଲଟିଗଲେ ।

ଇଂରେଜ ସରକାରର ନ୍ୟାୟପଦ୍ଧତିରେ କେବଳ ଭାରତର ସ୍ୱାଧୀନତା ସଂଗ୍ରାମୀମାନଙ୍କ ପାଇଁ ବିଚାରପତିମାନେ ଆଖିବୁଜି କେବଳ ସରକାରଙ୍କ ଆଖିକାନ ବୋଲାଉଥିବା ପୋଲିସର ପ୍ରସ୍ତୁତ ରିପୋର୍ଟ ଓ ସାକ୍ଷୀ ବୟାନକୁ ନେଇ ବିଚାର କରିବାର ଏକ ଅଲିଖିତ ପରମ୍ପରା ରହିଥିବାର ମାନ୍ୟତାକୁ ସ୍ୱୀକାର କରିନେଇଥିବାରୁ ବୋଧହୁଏ ଡ଼. ରାମନାଥନ୍ ଏମିତି ରାୟ ଦେଇଥିଲେ ।

ପ୍ରତିପକ୍ଷକୁ ପ୍ରତିବାଦ ଜଣାଇବାକୁ କୌଣସି ସୁବିଧା ଦିଆଯାଇନଥିଲା । ସ୍ୱାଧୀନତା ଲଢ଼େଇରେ ଭାଗନେଇଥିବା ଗାନ୍ଧୀବାଦୀ ଅହିଂସାବାଦୀ ବୀର ଲକ୍ଷ୍ମଣ ନାୟକଙ୍କ ପାଇଁ ଯେମିତି ଚରମ ପରୀକ୍ଷାର ବେଳା ଆସୁଛି ପଶନଥିଲା । ସଂଗ୍ରାମ ଚରମ୍ପର—ଏହାର ଅନ୍ତ ନାହିଁ । ଅତ୍ୟାଚାର ଥିଲାଯାଏ ସଂଗ୍ରାମ ଚାଲୁରହିଥିବ, ହିଂସାର ରୂପ ନେଇ ହେଉ କି ଅହିଂସାର ବାଣୀ ହୋଇ ।

ଅଦାଲତରୁ ତାଙ୍କୁ ଓ ଅନ୍ୟ ୪୯ ଜଣଙ୍କୁ ଫେରାଇ ନିଆଗଲା କୋରାପୁଟ ଜେଲକୁ । ପୁଣିଥରେ ଗୋଡ଼ରେ ହାତରେ ଲୁହାଶିକୁଳି ବାନ୍ଧି ଲକ୍ଷ୍ମଣ ନାୟକଙ୍କୁ ଠେଲିଦେଲେ ଜେଲ ଓ୍ୱାର୍ଡ଼ର କୋଠରୀ ନଂ ୧ ଭିତରକୁ ।

ସନ୍ଧ୍ୟା ଓହ୍ଲାଇ ଆସୁଥିଲା କୋରାପୁଟ ଜେଲ ଭିତରକୁ । ୫ଟି ଲଣ୍ଠନ ଜଳାଇ ଦିଆଗଲା ଜେଲର ବିଭିନ୍ନ ଜାଗାରେ । ରାତି ଗଡ଼ିଗଲା ଆସିଲା ଧୀରେ ଧୀରେ । କୋଠରୀ ସଂଖ୍ୟା ୧ ଆଗରେ ଜଳୁଥିଲା ଲଣ୍ଠନଟିଏ । ତା'ର ମ୍ଳାନ ଶିଖାରେ ଦିଶିଯାଉଥିଲା ଲକ୍ଷ୍ମଣନାୟକ ଦଣ୍ଡାବେଡ଼ି ହୋଇ ଚୁପ୍‌ଚାପ୍ ବସିରହିଥିଲେ । ମନେପଡ଼ୁଥିଲା ମଙ୍ଗଳା ନାୟିକାଣୀ, ପୁଅ ରଘୁନାଥର କଥା । ତେଲୁଲିଗୁମ୍ମାର କଥା । ତାପରେ ସେ ଯେମିତି ଶାନ୍ତହୋଇଗଲେ, ତାଙ୍କ ପାଟିରୁ ବଡ଼ପାଟିରେ ବାହାରିଗଲା ଭାଗବତର ସରଳ ଲଳିତ ପଦାବଳୀ ।

## ୧୬ । କୋରାପୁଟ ଜେଲରେ ଲକ୍ଷ୍ମଣଙ୍କ ଶେଷରାତି

ବିଚାରପତିଙ୍କ ରାୟ ବାହାରିବା ପରେ ଲକ୍ଷ୍ମଣ ନାୟକ ଓ ୪୯ ଜଣଙ୍କୁ ନେଇ ଜେଲକର୍ତ୍ତୃପକ୍ଷ ଅଦାଲତରୁ ଫେରିବା ପରେ 'ଦଣ୍ଡାବେଡ଼ି' ପିନ୍ଧାଇଦେଲେ । ଏହା ଏକ ବର୍ବର, ମନୁଷ୍ୟତାହୀନ ନୃଶଂସ ଦଣ୍ଡବିଧାନ ଥିଲା । ସେଦିନର ସେହି ଦୃଶ୍ୟ ଦେଖି କୋରାପୁଟ ଜେଲରେ ତାଙ୍କ ସହ ବନ୍ଦୀଥିବା ସ୍ୱାଧୀନତା ସଂଗ୍ରାମୀ ବିଶ୍ୱନାଥ ପଟ୍ଟନାୟକ କହନ୍ତି :

"ମାଥିଲି ଥାନାରେ ଯେଉଁମାନେ ବିକ୍ଷୋଭ ପ୍ରଦର୍ଶନ କରୁଥିବା ସମୟରେ ସରକାରୀ କର୍ମଚାରୀଙ୍କୁ ହତ୍ୟା ଅଭିଯୋଗରେ ଲକ୍ଷ୍ମଣ ନାୟକଙ୍କ ସଙ୍ଗେ ଗିରଫ ହୋଇଥିଲେ ସେମାନଙ୍କ ମଧ୍ୟରୁ ଅଧିକାଂଶ ଆଜୀବନ କାରାଦଣ୍ଡ ପାଇଲେ । ବିଚାର ଶେଷ ହେବା ପରେ ସେମାନଙ୍କୁ ଏକ ଅଦ୍ଭୁତ ଦଣ୍ଡ ଦିଆଗଲା । ସେମାନଙ୍କ ଦୁଇ-ଗୋଡ଼ରେ ଲୁହା ବଳା ପିନ୍ଧାଇଦିଆଗଲା ଓ ସେ ବଳାଦୁଇଟିକୁ ଯୋଡ଼ି ଦେଢ଼ଫୁଟର ଲମ୍ବା ଲୁହା ରଡ଼ଟିଏ ଲଗାଇଦିଆଗଲା । ସେଇ ଦୁଇଗୋଡର ବଳାରୁ ପୁଣି ଦୁଇଟି ଲୁହାରଡ଼ ପ୍ରାୟ ଦୁଇଫୁଟ ଲମ୍ବାର ବାହାରିଥିବ । ସେହି ରଡ଼ ଦୁଇଟିର ଅପରପାର୍ଶ୍ୱ

ମୁଡ ପରି ହୋଇଥିବ । ବନ୍ଦୀ ତାହାକୁ ହାତରେ ଧରି ଚାଲିବ ନଚେତ୍ ତା ଭିତରେ ରାମ୍ଚୁଁ ପୁରାଇ ଦଉଡ଼ି ପରି ଅଣ୍ଟାରେ ବାନ୍ଧିବ । ଯଦି ଲୁହା ରଡ୍ ଦୁଇଟିକୁ ଏମିତି ଧରାନଯାଏ ତାହେଲେ ତାହା ଗୋଡ଼ ପାଖରେ ପଡ଼ିରହିବ । ଯାହା ଫଳରେ ଚାଲିବା ସମ୍ଭବ ହେବ ନାହିଁ । ଏହାକୁ ଦଣ୍ଡାବେଡ଼ି କୁହାଯାଉଥିଲା ।

କେବଳ ଏତିକିରେ କଥା ସରୁନଥିଲା । ଦଣ୍ଡାବେଡ଼ି ପିନ୍ଧା କଏଦୀମାନଙ୍କୁ ମୁରୁଗା ଗଛର ପଣ ଛେଚି ଝୋଟ ବାହାର କରିବାକୁ ପଡୁଥିଲା । ସେମାନଙ୍କ ଦେହରେ ମୁରୁଗାର ରସ ଛିଟିକ ଆସି ପଡୁଥିଲା । ଏହି ବିଷାକ୍ତ ରସରେ ଦେହର ହାତଗୋଡ଼ କୁଣ୍ଡେଇ ହୋଇ, ଫୁଲିଯାଇ, ଶିବ ଶିବ ଫାଟିଯାଇ ତୀବ୍ର ଯନ୍ତ୍ରଣା ହେଉଥିଲା । ଏହାହିଁ ଥିଲା କୋରାପୁଟ ଜେଲ ଭିତରେ ବନ୍ଦୀମାନଙ୍କ ପାଇଁ ଶାସନ ତଥା ଚରମ ନିଷ୍ଠୁରତା । ଯେହେତୁ ଲକ୍ଷ୍ମଣ ନାୟକ ନିରକ୍ଷର, ସେ ଏହି ଦଣ୍ଡ ଭୋଗିବାକୁ ହେବ । ୧୩-୧୧-୧୯୪୨ରୁ ୧୬-୧୧-୧୯୪୨ ଏହି ତିନିଦିନ ସେ ଏହି ଯମଯନ୍ତ୍ରଣା ଭୋଗକରିଥିଲେ ।

ଲକ୍ଷ୍ମଣ ନାୟକ ଫାଶୀ ପାଇବେ ଏହା ଶୁଣି କୋରାପୁଟ ଜେଲର ସମସ୍ତ ଅନ୍ତେବାସୀ ଦୁଃଖରେ ଭାଙ୍ଗିପଡ଼ିଲେ । ଉପରୁ ଆଦେଶ ଆସିଲା ତାଙ୍କୁ ବ୍ରହ୍ମପୁର କେନ୍ଦ୍ର ଜେଲକୁ ପଠାଇ ଦିଆଯିବ । ସେତେବେଳେ ଲକ୍ଷ୍ମଣ ନାୟକଙ୍କ ସହିତ ଜେଲ୍ ଦଣ୍ଡ ଭୋଗୁଥିବା ସ୍ୱାଧୀନତା ସଂଗ୍ରାମୀ ମହମ୍ମଦ ବାଜୀ କୋରାପୁଟ ଜେଲରେ ଲକ୍ଷ୍ମଣଙ୍କ ଶେଷରାତି କଥା ମନେପକାଇ ଦୀର୍ଘଶ୍ୱାସ ଛାଡ଼ି କହନ୍ତି—ଯାହାର ମର୍ମହେଲା—

ରାତି ବଢ଼ୁଥିଲା । ବାହାରେ ବଣ ପର୍ବତକୁ ଘନ କୁହୁଡ଼ି ଘୋଡ଼ାଇ ପକାଇଥିଲା । ବର୍ଷା ଛାଡ଼ିଯାଇଥିଲେ ବି ଶୀତ ଥରାଇ ଦେଉଥିଲା ଜେଲ ଭିତରର ସବୁ ମଣିଷକୁ । ଏତେବଡ଼ ବିରାଟ ଜେଲର ତିନିଧାଡ଼ି ଲମ୍ବା ଲମ୍ବା ସେଲ୍ର ପିଣ୍ଡାରେ ଜଳୁଥିବା କେତୋଟି ଲଣ୍ଠନ ଅନ୍ଧାରକୁ ଦୂର କରିପାରୁନଥିଲା । ଅନ୍ଧାର ଓ ଆଲୁଅର ଏଇ ଲୁଚକାଲି ଖେଳ ଭିତରେ କୋରାପୁଟ ଜେଲ ଦିଶୁଥିଲା ଭୟଙ୍କର । ହାତରେ ବନ୍ଧୁକ ଧରି ସେଲ୍ର ଏପଟରୁ ସେପଟ ହୋଇ ପହରା ମାରୁଥିବା ୱାର୍ଡ଼ରମାନେ ସେମିତି ତତ୍ପର ଥିଲାଭଳି ମନେହେଉନଥିଲା । ପ୍ରାୟ ଅଧିକାଂଶ ଜେଲ ଜମାନ (ପୋଲିସ) ଢୋଳେଇବା । ଖଣ୍ଡି ଓଡ଼ିଆ କହନ୍ତି । ଜେଲ ବାରଣ୍ଡାର ଶେଷ ଆଡ଼କୁ କିଏ ଜଣେ ବଡ଼ ଧରାଇଲା ।

କାଶିଦ ରାତି । ଗଛରେ ଚଢ଼େଇ ଶୋଇଯାଇଛନ୍ତି । ଜେଲର୍ ତାଙ୍କ ଘରେ ଗଭୀର ନିଦରେ ମଗ୍ନ । ଏମିତି ପରିବେଶ ଦେଖି ନିଜ ନିଜ ସେଲ୍ ଭିତରୁ ବାହାରିଲେ ସ୍ୱାଧୀନତାସଂଗ୍ରାମୀ ମହମ୍ମଦ ବାଜୀ, ବିଶ୍ୱନାଥ ପଟ୍ଟନାୟକ, ସଦାନନ୍ଦ ମହାନ୍ତି ଓ ଲକ୍ଷ୍ମୀଚନ୍ଦ୍ର ଦାସ, ସୀମାଞ୍ଚଳ ବେହେରା ।

ହଠାତ୍ ମନେପଡ଼ିଗଲା ସେଦିନ ସନ୍ଧ୍ୟାର କଥା ମହମ୍ମଦ ବାଜୀଙ୍କର । ଅଦାଲତରୁ ଫାଶୀ ଆଦେଶ ପାଇ ଜେଲକୁ ଫେରିବା ବେଳେ ଲକ୍ଷ୍ମଣ ନାୟକ ସେତେବେଳେ

ମହମ୍ମଦ ବାଜୀ ଓ ବିଶ୍ୱନାଥ ପଟ୍ଟନାୟକଙ୍କ ସେଲ୍ ଅତିକ୍ରମ କରୁଥିଲେ ସେ ଶୁଣାଇଲା ପରି କହିଲେ, "ମତେ ଫାଶୀ ଅର୍ଡ଼ର ହୋଇଗଲା ଆଜ୍ଞା ।" ତାଙ୍କ ମୁହଁରୁ କଥା ସରିଛି କି ନାହିଁ ଓ୍ୱାର୍ଡରମାନେ ତାଙ୍କୁ ଟିଙ୍କି ନେଇଗଲେ । ଫାଶୀ ପାଇଥିବା ଲୋକକୁ ଯେଉଁ ସେଲ୍‌ରେ ରଖନ୍ତି ସେଇ ସେଲ୍‌ରେ ପୂରାଇଦେଲେ । ତାଙ୍କୁ ଦେଖା କରିବା ମନାକରିଦିଆଗଲା ।

ସେଦିନ ରାତିରେ ଜେଲ୍‌ର ପ୍ରଥମ ଗେଟ୍‌କୁ ଜଗିବା ଦାୟିତ୍ୱ ପଡ଼ିଥିଲା ରାମଚନ୍ଦ୍ର ହାବିଲଦାରର । ଲକ୍ଷ୍ମଣ ନାୟକଙ୍କୁ ଫାଶୀ ଦଣ୍ଡ ମିଳିବା ଶୁଣି ତା ମନରେ ବେଶୀ ଦୁଃଖ । ଏଣୁ ରାମଚନ୍ଦ୍ର ହାବିଲଦାର ମହମ୍ମଦ ବାଜୀଙ୍କ ଅନୁରୋଧ କ୍ରମେ ଗେଟ୍ ବାରଣ୍ଡାର ସେପଟରୁ ଆଉ ଏ ପଟକୁ ଆସିଲା ନାହିଁ । ରାମଚନ୍ଦ୍ର ହାବିଲଦାରର ସହାୟତାରେ ସଦାନନ୍ଦ ମହାନ୍ତି, ଲକ୍ଷ୍ମୀଚନ୍ଦ୍ର ଦାସ, ସୀମାଞ୍ଚଳ ବେହେରା, ମହମ୍ମଦ ବାଜୀ, ବିଶ୍ୱନାଥ ପଟ୍ଟନାୟକ ଲକ୍ଷ୍ମଣ ନାୟକଙ୍କୁ ଦେଖିବା ପାଇଁ ସେଲ୍ ନଂ ୧ ଆଡ଼କୁ ଗଲେ । ମନରେ ଆଶଙ୍କା — ସତ କିଏ ଜାଣିଦିଏ ?

ସେତେବେଳକୁ ନିବିଷ୍ଟ ମନରେ ଲକ୍ଷ୍ମଣ ନାୟକ ପଢୁଥିଲେ ଜଗନ୍ନାଥ ଦାସଙ୍କ ଭାଗବତ । ଏମାନେ ଯାଇ ଲକ୍ଷ୍ମଣଙ୍କ ସେଲ୍ ପାଖରେ ପହଞ୍ଚିଲେ । ଲକ୍ଷ୍ମଣ ନାୟକ ଚାହିଁଲେ ସମସ୍ତଙ୍କୁ । ଲକ୍ଷ୍ମଣ ଭକ୍ତିରେ ହାତଯୋଡ଼ି କହିଲେ "ଜୁହାର ଆଜ୍ଞା ।" ଏଇ ଅଶ୍ରୁଳ ପରିବେଶରେ ସଦାନନ୍ଦ ମହାନ୍ତି ଲକ୍ଷ୍ମଣଙ୍କୁ ପଚାରିଲେ, "ତକେତ ବରମପୁର ଜଇଲ ନେଇଯିବାଇବେ ଲାଇଖଣ, ତୋର ପିଲାମନକେ କାଇ ଖବର ପାଙ୍ଗବୁ ।"
[ ତୋତେ ତ ବ୍ରହ୍ମପୁର ଜେଲ ନେଇଯିବେ ଲକ୍ଷ୍ମଣ, ତୋ ପିଲାଙ୍କ ପାଖକୁ କି ଖବର କହିବୁ ? ]

କିଛି ସମୟ ନୀରବ ରହିଗଲେ ଲକ୍ଷ୍ମଣ ନାୟକ । ତାପରେ କହିଲେ, "ମୁଇଁ କାଇଟା ପାଙ୍ଗବ ଆଜ୍ଞା । ମୁଇଁତ ଫାଶୀ ହେଇଜିବେ । ତମେ ତ ସ୍ୱରାଜ ଦେଖବା । ମୁଇଁ ଦେଖିନାଇପାରେ । [ ମୁଁ କଣ କହିବ ଆଜ୍ଞା ! ମୋତେ ତ ଫାଶୀ ହେବ । ଆପଣମାନେ ସ୍ୱରାଜ ଦେଖିପାରିବେ । ମୁଁ ଦେଖିପାରିବି ନାହିଁ । ]

ପୁଣିଥରେ ସଦାନନ୍ଦ ମହାନ୍ତି ପଚାରିଲେ : "ହଇନା ! ତରଘରେ କାଇଟା କଇବୁ ମାଙ୍ଗନ । ତୋର ପିଲାମନକେ କୋନ ଦେଖବାଇବେ ? [ ତୋର ଘରେ କଣ କହିବୁ କହ । ତୋ ପରେ ତୋ ପିଲାମାନଙ୍କୁ କିଏ ଦେଖାଶୁଣା କରିବ ? ]

କେମିତି ଏକ ଆତ୍ମବିଶ୍ୱାସରେ ଲକ୍ଷ୍ମଣ ନାୟକ ଉତ୍ତରଦେଲେ, "ମର ସ୍ୱାଲଗ କୋଟି ଲୋକ୍ ଆଚ୍ଛନ୍ତ ବାବୁ ମୋର କୁଟୁମ୍ କେ ଦେଖବା କାଜେ ।"

ସେଇ ଦିନର ସେଇ କଥାକୁ ମନେପକାଇ ମହମ୍ମଦ ବାଜୀ କହନ୍ତି "ସ୍ୱରାଜ ପରେ ୪୦ କୋଟି ଜଣ ଜଣେହେଲେ ମଧ୍ୟ ତାଙ୍କ କୁଟୁମ୍ବକୁ ଦେଖିଲେ ନାହିଁ ।"

ସେଦିନ ରାତିର କଥା ମନେପକାଇ ବିଶ୍ୱନାଥ ପଟ୍ଟନାୟକ କହନ୍ତି : "ମୋର ଠିକ୍ ମନେଅଛି ସେଦିନ ୧୪ । ୧୧ । ୧୯୪୨ । ତାଙ୍କୁ ଫାଶୀ ଅର୍ଡ଼ର ହେବା ପରଦିନ

ନବରଙ୍ଗପୁରର ମହମ୍ମଦ ବାଙ୍ଗୀ ଓ ମୁଁ, ରାମଚନ୍ଦ୍ର ହ୍ୱାବଲଦାରଙ୍କୁ କୁହାବୋଲା କରି ଲକ୍ଷ୍ମଣଙ୍କ ସେଲ୍‌କୁ ଦେଖାକରିବାକୁ ଗଲୁ । ସେ କଥାବାର୍ତ୍ତା ମଝିରେ କହିଲେ, "ସ୍ୱରାଜ ଦେଖିପାରିଲି ନାହିଁ ଆଖିରେ । ସେ ଟିକିଏ ଦବିଯାଇଥିଲେ, କିନ୍ତୁ ଭଗବତ୍‌ ବିଶ୍ୱାସ ଦୃଢ଼ ଥିବାରୁ ପ୍ରତିକ୍ରିୟା ପ୍ରକାଶିତ ହେଉନଥିଲା । ନିଜ ଘରର ଅବସ୍ଥା କ'ଣ ହେବ, ସ୍ତ୍ରୀ-ପିଲା ଅନାଥ ହୋଇଯିବେ, ଏସବୁ କଥା ସେ କେବେ ଆମ ଆଗରେ କହୁନଥିଲେ ।

୧୪-୧୧-୧୯୪୨ ରାତିରେ ଯେତେବେଳେ ଜେଲ୍‌ରେ ସମସ୍ତେ ଶୋଇପଡ଼ିଥିଲେ, ସମସ୍ତ ଅନ୍ତେବାସୀଙ୍କ ଅଜାଣତରେ ଜେଲରଙ୍କ ଆଦେଶରେ ଜଣେ ସବ୍ ଜେଲର୍ ଓ ଜଣେ କନେଷ୍ଟବଲ ଲକ୍ଷ୍ମଣ ନାୟକଙ୍କୁ ରାତିର ଅନ୍ଧାରରେ ବ୍ରହ୍ମପୁର କେନ୍ଦ୍ର ଜେଲକୁ ନେଇଗଲେ । ୪୭ ବର୍ଷ କୋରାପୁଟ ମାଟିରେ କଟାଇ, ଦେଶପାଇଁ ଲଢ଼ି, ଲକ୍ଷ୍ମଣ ନାୟକ ଅନ୍ତିବଗୁଡ଼ାର ନିଷ୍ଠୁର ନିୟତି ଭୋଗିବା ପାଇଁ ଏ ମାଟି ଛାଡ଼ିଲେ । ଯିଏ ଆସିଥାଏ ସେ ଏକୁଟିଆ ହିଁ ଯାଏ, ଆଉ ଛାଡ଼ିଯାଏ ତା କରଣୀର ବର୍ଷ ମାସ ଦିନ ଦଣ୍ଡର ବିବରଣୀ ।

## ୧୭ । ଜୀବନର ଶେଷ ୧୦୫ ଦିନ

ଗଞ୍ଜାମ ଜିଲ୍ଲାର ବ୍ରହ୍ମପୁର ଜେଲ ଗୋଟିଏ କେନ୍ଦ୍ର ଜେଲ । ଓଡ଼ିଶାର ବହୁ ସ୍ୱାଧୀନତା ସଂଗ୍ରାମୀଙ୍କୁ ଏହି ଜେଲକୁ ଅଣାଯାଇଛି ଓ ରଖାଯାଇଛି ସତ୍ୟାଗ୍ରହ ଓ ଭାରତଛାଡ଼ ଆନ୍ଦୋଳନ ସମୟରେ ।

ଜେଲରେ ପକ୍‌କା ଘରର ଛାତ ତଳେ ସାଧାରଣ ବନ୍ଦୀମାନେ ରହୁଥିଲେ । ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ରଖିବାପାଇଁ ଅସ୍ଥାୟୀ ଘର ସବୁ ତିଆରି କରାଯାଇଥିଲା । ଜେଲ ବାହାରେ ନୂଆ ପାଚେରି ତିଆରିକରାଯାଇ ତାକୁ ଲଗାଇ ବାଉଁଶତାଟିର କାନ୍ଥ ଓ ଛଣ ଛପର ଦେଇ ଲମ୍ବା ଖୁଆଡ଼ମାନ ତିଆରିକରାଯାଇଥିଲା । ଏହି ବାଉଁଶତାଟିରେ ପିଚୁ ତରଳାଇ ବୋଳାଯାଇଥିଲା । ଦଶ ବାରଟା କୋଠରିକୁ ନେଇ ଗୋଟିଏ ଖୁଆଡ଼ । ତା ଭିତରେ ଗୋଟିଏ କଚା ପାଇଖାନା କରାଯାଇଥିଲା । ଖୁଆଡ଼ ଭିତରକୁ ଯିବାଆସିବା କରିବା ପାଇଁ ଗୋଟିଏ ମାତ୍ର ଦୁଆର ଥିଲା ।

ପ୍ରତ୍ୟେକ ବାଉଁଶତାଟିଘେରା ଲମ୍ବା ଖୁଆଡ଼ ଶେଷ କୋଣରେ ପରିସ୍ରା ଲାଗିଲେ ଯିବା ପାଇଁ ଗୋଟିଏ ଲେଖାଏଁ ଡ୍ରମ ରଖାଯାଇଥିଲା । ସବୁଦିନ ସକାଳୁ ମେହେନ୍ତରମାନେ ଆସି ଏହା ସଫାକରୁଥିଲେ । ବର୍ଷାଦିନେ ଝରକା ବାଟଦେଇ ପାଣି ଭିତରକୁ ପଶିଆସୁଥିଲା । ଜେଲର କବାଟ ସକାଳ ୫ଟାରେ ଖୋଲାହୋଇ ରାତି ୯ଟାରେ ବନ୍ଦ କରିଦିଆଯାଉଥିଲା । କିନ୍ତୁ ସବୁବେଳେ ବନ୍ଧୁକଧାରୀ ଜଗୁଆଳମାନେ ଏହି ଖୁଆଡ଼କୁ

ଜଗିରହୁଥିଲେ । ପୁରୁଣା ଜେଲ ଓ ନୂଆ ଜେଲ ମଧ୍ୟରେ ଗୋଟିଏ ଲୁହାଗେଟ୍ ଥିଲା ଯହିଁରେ ହରଦମ୍ ତାଲାପଡ଼ିଥିଲା ।

ରାଜନୈତିକ ବନ୍ଦୀମାନଙ୍କୁ ବିଭିନ୍ନ ଶ୍ରେଣୀରେ ବିଭକ୍ତ କରାଯାଉଥିଲା । କ ଶ୍ରେଣୀ ଓ ଖ ଶ୍ରେଣୀ ବନ୍ଦୀଙ୍କୁ ଗୋଟିଏ ଘରେ ରଖାଯାଉଥିଲା । ଏମାନଙ୍କୁ ଦାଢ଼ି ଦାଣ କାଟିବା ପାଇଁ ବ୍ଲେଡ, ଦେହଲଗା ସାବୁନ ଓ ଚିଠିପତ୍ର ଲେଖିବା ପାଇଁ ସୁବିଧା ଦିଆଯାଉଥିଲା ।

୧୯୪୨ ବେଳକୁ ଏହି ଜେଲର ୨ ନମ୍ବର ଓ୍ୱାର୍ଡ଼ରେ ନିତ୍ୟାନନ୍ଦ କାନୁନଗୋ, ପ୍ରାଣକୃଷ୍ଣ ପଢ଼ିହାରୀ, ରାଜକୃଷ୍ଣ ବୋଷଙ୍କୁ ରଖାଯାଇଥିଲା । ସାରେଳ ମିଶ୍ର ଓ ଅପର୍ଣ୍ଣା ପାଣି ୪ ନମ୍ବର ଓ୍ୱାର୍ଡ଼ରେ, ବିଶ୍ୱନାଥ ଦାସ ୫ ନମ୍ବର, ଗୋପବନ୍ଧୁ ଚୌଧୁରୀ, ଆଗ୍ନର୍ଯ୍ୟ ହରିହର ଦାସ, ଗୃହକବାବୁ ଓ ନବକୃଷ୍ଣ ଚୌଧୁରୀ ଓ୍ୱାର୍ଡ଼ ନଂ ୮ ରେ, ସୁରେନ୍ଦ୍ରନାଥ ଦ୍ୱିବେଦୀ ୭ ନମ୍ବରରେ, ରାଧାନାଥ ରଥ, ଉମାଚରଣ ପଟ୍ଟନାୟକ ଓ ଅନ୍ୟମାନେ ଓ୍ୱାର୍ଡ଼ ନମ୍ବର ୬ରେ ଥିଲେ ।

କୋରାପୁଟ ଜେଲରୁ ଆସି ଲକ୍ଷ୍ମଣ ନାୟକ ୧୬-୧୧-୪୨ରେ ପହଞ୍ଚିଲେ । ମୃତ୍ୟୁ-ଦଣ୍ଡରେ ଦଣ୍ଡିତ ହୋଇଥିବା ବ୍ୟକ୍ତିଭାବେ ତାଙ୍କୁ ବ୍ରହ୍ମପୁର ଜେଲର ୧୪ ନମ୍ବର ସେଲରେ ରଖାଗଲା । ତାଙ୍କ ସହିତ କାହାକୁ ମିଶିବାକୁ ଅନୁମତି ଦିଆଯାଉନଥିଲା ।

ବାହାର ଜେଲରେ ଥିବା ସଗ୍ରାମୀମାନେ କୌଣସି ନା କୌଣସି ବାହାନା କରି ତାଙ୍କୁ ଖାଲି ଟିକିଏ ଆଖି ପୂରେଇ ଦେଖିବା ପାଇଁ ତାଙ୍କ ସେଲ୍ ନିକଟକୁ ଯାଉଥିଲେ । ତାଙ୍କୁ ଦେଖିଲା ପରେ ସେମାନଙ୍କ ମନରେ ଯେଉଁ ପୀଡ଼ା ହେଉଥିବ ତାହା ଭାଷାରେ ବୁଝାଇ ହେବନାହିଁ ।

ସବୁବେଳେ ଲକ୍ଷ୍ମଣଙ୍କ ମନରେ ଗୋଟିଏ ଦୁଃଖ, ସେ ସ୍ୱରାଜ୍ୟ ଦେଖିପାରିବେ ନାହିଁ । ଯେତେବେଳେ କାହା ସହିତ ଟିକିଏ କଥା ହେବାର ସୁଯୋଗ ମିଳେ ସେ ଏଇ ଦୁଃଖଟିକୁ ହିଁ ବଖାଣିଥାନ୍ତି ।

କେବଳ ମୃତ୍ୟୁକୁ ଅପେକ୍ଷାକରି ଲକ୍ଷ୍ମଣ ନାୟକ ତାଙ୍କ ଜୀବନର ଶେଷ ୧୦୫ ଦିନ କୋଠରି ନମ୍ବର ୧୪ରେ କଟାଇବା ପାଇଁ ମାନସିକ ଭାବେ ପ୍ରସ୍ତୁତ ହୋଇଗଲେ । ତାଙ୍କ ପାଇଁ ଆଉ କରିବାର କିଛି ନଥିଲା । ଏହି ଅପେକ୍ଷା ହିଁ ତାଙ୍କ ନିଷ୍ଠା ଓ ତ୍ୟାଗର ଚରମ ପରୀକ୍ଷା ହୋଇଗଲା ।

ଯେତେବେଳକୁ କୋରାପୁଟ ଜିଲ୍ଲାର ତିନି ସେନାପତି ରାଧାକୃଷ୍ଣ ବିଶ୍ୱାସରାୟ, ରାଧାମୋହନ ସାହୁ, ସଦାଶିବ ତ୍ରିପାଠୀ ବ୍ରହ୍ମପୁର ଜେଲରେ ଥାନ୍ତି । ଲକ୍ଷ୍ମଣ ନାୟକଙ୍କୁ ଫାଶୀଦଣ୍ଡ ଦିଆଯାଉଥିବାରୁ ସେମାନେ ମ୍ରିୟମାଣ ହୋଇପଡ଼ିଲେ । ବ୍ରହ୍ମପୁର ଜେଲରେ ଥିବା ଓଡ଼ିଶାର ସବୁ ବଡ଼ ବଡ଼ ନେତା ଲକ୍ଷ୍ମଣ ନାୟକଙ୍କ ଫାଶୀ ଆଦେଶ ବିରୋଧରେ ପାଟନା ହାଇକୋର୍ଟରେ ଆବେଦନ କରିବା ପାଇଁ ସ୍ଥିରକଲେ । ଏକ ଆବେଦନପତ୍ର ଲେଖାଯାଇ ଲକ୍ଷ୍ମଣ ନାୟକଙ୍କ ସ୍ୱାକ୍ଷରରେ ବ୍ରହ୍ମପୁରର ଜଣେ ବଡ଼ ଓକିଲ ରାଧାଚରଣ

ଦାସଙ୍କ ନିକଟକୁ ପଠାଗଲି ଆବେଦନ କରିବାପାଇଁ । ତାଙ୍କୁ ଚିଠିରେ ଅନୁରୋଧ ଏମିତି କରାଯାଇଥିଲି :

ପ୍ରିୟ ମହାଶୟ,

ଜୟପୁର ଜମିଦାରୀର ଜଣେ ଫରେଷ୍ଟ ଗାର୍ଡ ଜି. ରାମେୟାର ହତ୍ୟା ଅପରାଧରେ ଦୋଷୀ ସାବ୍ୟସ୍ତ କରି ମୋତେ ମୃତ୍ୟୁଦଣ୍ଡ ଦେବାପାଇଁ ରାୟ ଦିଆଯାଇଛି । ମୋର କୌଣସି ଦୋଷ ନଥାଇ ସୁଦ୍ଧା ପୋଲିସର ଖରାପ ଅଭିସନ୍ଧି ଯୋଗୁଁ ମୋତେ ମୃତ୍ୟୁଦଣ୍ଡ ଭୋଗ କରିବାକୁ ପଡ଼ୁଛି ।

ମୁଁ ଗତ କେତେବର୍ଷ ଧରି ନିଷ୍ଠାପର କଂଗ୍ରେସକର୍ମୀ ଭାବେ କାର୍ଯ୍ୟ କରୁଥିଲି । ମହାତ୍ମା ଗାନ୍ଧୀଙ୍କ ଆଦର୍ଶ ରୂପେ ଗ୍ରହଣ କରି ଅହିଂସାକୁ ମୁଁ ନିଜର ଚରମ ବ୍ରତ କରିଥିଲି । କୌଣସି ଅବସ୍ଥାରେ ସୁଦ୍ଧା ମୁଁ ସେଥିରୁ ଯେମିତି ବିଚ୍ୟୁତ ନହୁଏ ସେଥିପ୍ରତି ସତତ ଚେଷ୍ଟିତ ଅଛି । ସେଦିନ ମୁଁ ଶାନ୍ତିପୂର୍ଣ୍ଣ ଭାବେ ଭାରତର ସ୍ୱାଧୀନତା ବିଷୟରେ କହିବା ପରେ ଲୋକମାନେ ପୋଲିସର ନିର୍ଦ୍ଦେଶ ନମାନି ବହୁ ସଂଖ୍ୟାରେ ଯାଇ ଥାନାରେ ଗିରଫ ହେବାପାଇଁ ଅପେକ୍ଷା କରି ରହିଥିଲେ । ସେତିକବେଳେ ପୋଲିସ ବିଚାରଶୂନ୍ୟ ଭାବେ ଯେଉଁ ଅମାନୁଷିକ ଗୁଳିଚାଳନା କଲା ସେଥିରେ ହିଁ ପ୍ରକୃତରେ ରାମେୟାର ମୃତ୍ୟୁ ଘଟିଛି । ଗୁଳି ଚାଳନା ପୂର୍ବରୁ ପୋଲିସ ମୋତେ ମାଡ଼ମାରି ଅଚେତ କରି ପକାଇଦେଇଥିଲି । ମୋ ମୂର୍ଦ୍ଧରେ ବୟନେଟ୍ ମାଡ଼ ବସିଥିଲି । ମୁଁ ନିସ୍ତେଜ ହୋଇ ପଡ଼ିରହିଥିଲି । ଏଭଳି ଅବସ୍ଥାରେ ମୁଁ ରାମେୟା ଉପରେ ଆକ୍ରମଣ କରି ତାକୁ ଯେ ହତ୍ୟା କରିବି ଏହା ସଂପୂର୍ଣ୍ଣ ଅସମ୍ଭବ । ଭଗବାନଙ୍କ ଦୃଷ୍ଟିରେ ଏବଂ ମୋ ନିଜ ବିବେକ ଦୃଷ୍ଟିରେ ମୁଁ ସଂପୂର୍ଣ୍ଣ ନିର୍ଦ୍ଦୋଷ ।

ତେଣୁ ମୁଁ ଆପଣଙ୍କୁ ହିଁ ବର୍ତ୍ତମାନ ମୋର ଏକମାତ୍ର ସାହାଯ୍ୟକର୍ତ୍ତା ଭାବେ ଗ୍ରହଣ କରୁଛି । ମାନ୍ୟବର ହାଇକୋର୍ଟଙ୍କୁ ଆବେଦନପତ୍ର ପଠାଯାଇଛି । ମୋର ଅନୁରୋଧ ଆପଣ ମୋ ସହିତ କଥାବାର୍ତ୍ତା କରି ଏବଂ ସମସ୍ତ ନଥିପତ୍ର ଅନୁଧାନ କରି ହାଇକୋର୍ଟ ଓକିଲଙ୍କୁ ଦରକାରୀ ତଥ୍ୟ ଯୋଗାଇଦେବେ । ॥ଇତି॥

ଲକ୍ଷ୍ମଣ ନାୟକ
(ଆସାମୀ ନଂ ୬୨୧)

ଓକିଲ ରାଧାଚରଣ ଦାସ ଏହି ଚିଠିପାଇ ବ୍ରହ୍ମପୁର ଜେଲରେ ଥିବା ଶ୍ରୀ ଉମାଚରଣ ପଟ୍ଟନାୟକଙ୍କ ସହିତ ଆଲୋଚନା କରି ପାଟଣା ହାଇକୋର୍ଟରେ ଆବେଦନ କଣାଇଲେ । ପାଟଣା ହାଇକୋର୍ଟର ମାନ୍ୟବର ବିଚାରପତି ଏଚ୍. ଆର୍. ମେରେଡ଼ିଥ୍ ଓ ପିଟର ଏଚ୍. ଆର୍. ବ୍ରୋଙ୍କ କୋର୍ଟରେ ଏହାର ଶୁଣାଣି ହେଲା । ଲକ୍ଷ୍ମଣ ନାୟକଙ୍କ ତରଫରୁ ଶ୍ରୀ ପୀତାମ୍ବର ମିଶ୍ର ଏହି ମୋକଦ୍ଦମା ପାଟଣା ହାଇକୋର୍ଟରେ ଲଢ଼ିଥିଲେ ।

ଶ୍ରୀ ପୀତାମ୍ବର ମିଶ୍ରଙ୍କ ସମସ୍ତ ଯୁକ୍ତିତର୍କ ଇଂରେଜ ବିଚାରପତିଦ୍ୱୟଙ୍କୁ ସନ୍ତୁଷ୍ଟ କରିପାରିଲା ନାହିଁ । ସେମାନେ ତଳକୋର୍ଟର ରାୟକୁ କାଏମ ରଖି ଲକ୍ଷ୍ମଣ ନାୟକଙ୍କ ଫାଶୀଦଣ୍ଡକୁ ଅନୁମୋଦନ କଲେ । ୧୩-୧-୧୯୪୩ ଦିନ ପାଟଣା ହାଇକୋର୍ଟ ଲକ୍ଷ୍ମଣ ନାୟକଙ୍କ ଆବେଦନ ଖାରଜ କରିଦେଲେ । ହାଇକୋର୍ଟ ଉପର କୋର୍ଟରେ ପୁଣିଥରେ ଆବେଦନ କରିବା ଉଦ୍ୟମ ସଫଳ ହେଲନାହିଁ ।

ଫାଶୀଦଣ୍ଡ ଅନୁମୋଦନ ହୋଇଗଲା ପରେ ଲକ୍ଷ୍ମଣ ନାୟକ ଏକୁଟିଆ ହୋଇଗଲେ । ତାଙ୍କ କୋଠରି ପାଖରେ ପହରା କଡ଼ା କରିଦିଆଗଲା । ଅନ୍ୟ ନେତାମାନେ ହତାଶ ହୋଇ ଅସହାୟ ହୋଇଗଲେ । ଏକଥା ଶୁଣି ରାଧାକୃଷ୍ଣ ବିଶ୍ୱାସରାୟ କାନ୍ଦି ପକାଇଲେ । ରାଧାମୋହନ ସାହୁ ଅସ୍ଥିର ହୋଇପଡ଼ିଲେ । କେବଳ ସଦାଶିବ ତ୍ରିପାଠୀ କଠୋର ଦମ୍ଭଧରି ରହିଲେ ।

ଲକ୍ଷ୍ମଣ ଥିଲେ ଜଙ୍ଗଲର ପ୍ରକୃତିର ସନ୍ତାନ । ସେ ଜାଣନ୍ତି ମଣିଷ ହେଉଛି ଯମର କାକୁଡ଼ିବାଡ଼ି । ଯେତେବେଳେ ମନହେବ ଯମ ତାର କାତିରେ କାକୁଡ଼ିର ଡେମ୍ଫ କାଟି ନେଇଯିବ । ଏହା ନିଶ୍ଚିତ ସତ୍ୟ । ଦୁଃଖ କରିବାର କିଛି ନାହିଁ । ମଣିଷ ଜନ୍ମହେଲେ ମରିବ । ଏହି ସତ୍ୟଟିକୁ ସେ ପୂର୍ବପୁରୁଷଙ୍କଠାରୁ ଶୁଣିଥିଲେ ବୋଲି ବୋଧେ ସେତେ ବିଚଳିତ ହେଲେ ନାହିଁ । ସେ ହୋଇଗଲେ ଗମ୍ଭୀର, ସ୍ଥିର ।

ସବୁଦିନ ସକାଳୁ ଉଠି ଗାଧୁଆ ପାଧୁଆ ସାରି ସେ ରାମଧୁନ ବୋଲନ୍ତି । ଗୁଣୁଗୁଣୁ ହୋଇ ଗାଆନ୍ତି ସବୁଠୁ ବେଶୀ ଭଲପାଉଥିବା ସେଇ ଭଜନକୁ "ବୈଷ୍ଣବ ଜନତୋ ତେ କହିୟେରେ..." ଏମିତି ବିତିଯାଏ ସକାଳ । ଏକ ନୀରବ ଅସହ୍ୟ ଦିନ ସରେ ବହୁ ପ୍ରତୀକ୍ଷାରେ । ସେ ଆଖି ବୁଜି ପଡ଼ିରହନ୍ତି ଏକ ଶୂନ୍ୟ ଜୀବନର ଅସରନ୍ତି ପ୍ରତୀକ୍ଷାକୁ ନେଇ ଭେଟିବା ପାଇଁ ସେଇ ଶେଷ ଦିନକୁ । ସେଇ ଆଖି ବୁଜିବା ଭିତରେ ସେ ଦେଖନ୍ତି ପ୍ରିୟ ଜନମମାଟି ତେନ୍ତୁଲିଗୁମ୍ମାକୁ, ଜୀବନର ବହୁ ସୁଖଦୁଃଖର ସାଥୀ ତାଙ୍କ ପତ୍ନୀ ମଙ୍ଗୁଲିକୁ । ଦେଖନ୍ତି ପୁଅ ଭେଣ୍ଡିଆ ହୋଇଗଲଣି । ୨୦ ବର୍ଷର ଯୁବକ ଏବେ ରଘୁନାଥ । ଝିଅ ଦେହରେ ବୟସ ୧୭ ଆଙ୍କିଦେଲଣି । କାହାର ହେଲେ ବିବାହ ହୋଇନାହିଁ—ନା ରଘୁନାଥର ନା ଝିଅ କୌଶଲ୍ୟାର । ଜେଲର ଏକ ନିଃସଙ୍ଗ କୋଠରିରେ ମୃତ୍ୟୁକୁ ଅପେକ୍ଷା କରୁଥିବା ମଣିଷ, ନିଜ ଲୋକବାକ, ନିଜ ସଂସ୍କୃତିଠାରୁ ଦୂରରେ ଥିବା ମଣିଷ, ଆଦର୍ଶ ପାଇଁ ଆଜି ଏହି ଦଣ୍ଡ ଭୋଗୁଥିବା ମଣିଷର ମନସ୍ଥିତିକୁ ବୁଝିବା ଯେ କେତେ କଷ୍ଟକର ! ସ୍ୱାଧୀନତା ପାଇଁ ଏତେ କଷ୍ଟ ସହିବାକୁ ହୁଏ ପରା ? ଯେମିତି ସହିଥିଲେ ଭଗତ ସିଂ, ସୁଖଦେବ, ରାଜଗୁରୁ । କେତେ ଜନ୍ମ ତପସ୍ୟାର ଫଳ ଏହା କିଏ କହିପାରିବ ?

ରାତି ଆସେ । ଲକ୍ଷ୍ମଣ ଅଣ୍ଟୁମାଡ଼ି ବସି ରାମଧୁନ ଗାଆନ୍ତି । ତାଙ୍କର ପ୍ରିୟ ମାଉଲି ଠାକୁରାଣୀଙ୍କୁ ନତମସ୍ତକରେ ସ୍ମରଣ କରନ୍ତି ।

ଉପରୁ ଆଦେଶ ଆସିଲା ଆସନ୍ତା ୨୯-୩-୧୯୪୩ ଦିନ ଲକ୍ଷ୍ମଣ ନାୟକଙ୍କୁ ମୃତ୍ୟୁ ନହେଲାଯାଏ ଫାଶୀରେ ଝୁଲାଇ ଦିଆଯିବ । ସେଦିନ ସମଗ୍ର ବ୍ରହ୍ମପୁର ଜେଲ ସ୍ତବ୍ଧ ହୋଇଗଲା । ସମସ୍ତ କୋଠରୀରେ ଦୀର୍ଘଶ୍ୱାସ । ଲକ୍ଷ୍ମଣ ନିର୍ବିକାର, ଶାନ୍ତ, ଅବିଚଳିତ ।

## ୧୮ । ଅନ୍ତିମ ରାତ୍ରିର ଅଶ୍ରୁ

ତେନ୍ତୁଳିଗୁମ୍ମାର ବଳିସିଂ ପୂଜାରୀ ମାଲିକ ଗୁଳିକାଣ୍ଡରେ ଆଘାତ ପାଇ ବହୁଦିନ କଟକ ହସ୍ପିଟାଲରେ ଚିକିତ୍ସିତ ହେଲେ । ତାଙ୍କୁ ଯାବଜ୍ଜୀବନ କାରାଦଣ୍ଡର ସଜା ହୋଇଥିଲା । ମୃତ୍ୟୁଦଣ୍ଡର ସଜା ପାଇ ଅନ୍ୟ କୋଠରୀକୁ ସ୍ଥାନାନ୍ତରିତ ହେବା ଆଗରୁ ଆବେଶ ଓ ଆବେଗରେ ବଳିସିଂ ପୂଜାରୀଙ୍କୁ ଲକ୍ଷ୍ମଣ ନାୟକ କହିଥିଲେ, "ମୁଁତ ମରବି, ଇଟା ଇଂରେଜ ସରକାର ଆଉ ଜୟପୁର ରଜାର କାମ୍ । କପାଳଥାନେ ଯେନ୍ଟା ଆଛେ ହାଇଟା ହେଇସି । ସ୍ୱରାଜ ହେଇସି, ମୋର ଦେଶର ଲୋକମନ ଦେଖିବାଇବେ । ଗାନ୍ଧୀ ମାହାପୁରୁର ରାଜ ହେଇସି । ଯୋନମନ ଜଇଲ ଥାନେ ଆଛତ୍ ଛାଡ଼ବାଇ ।"

[ ମୁଁ ତ ମରିବି, ଏହା ଇଂରେଜ ସରକାର ଓ ଜୟପୁର ରାଜା ଷଡ଼ଯନ୍ତ୍ର କରିସାରି-ଛନ୍ତି । କପାଳରେ ଯାହା ଅଛି ତାହା ହେବ । ସ୍ୱରାଜ୍ୟ ହେବ, ମୋ ଦେଶର ସମସ୍ତେ ତାହା ଦେଖିପାରିବେ । ଆଜି ଯେଉଁମାନେ ଜେଲରେ ଅଛନ୍ତି, ସେମାନେ ମୁକ୍ତି ପାଇବେ । ]

୨୯-୩-୧୯୪୩ ସକାଳ ୫ଟାରେ ଲକ୍ଷ୍ମଣ ନାୟକଙ୍କୁ ମଲାଯାଏ ଫାଶୀରେ ଝୁଲାଇ ଦିଆଯିବ ଏହି କଥା ବ୍ରହ୍ମପୁର ଜେଲରେ ଥିବା ସଂଗ୍ରାମୀମାନେ ୨୮-୩-୧୯୪୩ରେ ଜାଣିବାକୁ ପାଇଲେ । ଏହା ଜଣାପଡ଼ିଯିବାପରେ ସମସ୍ତେ ଦୁଃଖରେ ଭାଙ୍ଗିପଡ଼ିଲେ । ଜେଲ ଚାରିଦିଗରେ ବହୁସଂଖ୍ୟାରେ ବନ୍ଧୁକଧାରୀ ପୋଲିସ ଜଗାଇ ଦିଆଗଲା । ଜେଲଭିତରେ ଥିବା ସଂଗ୍ରାମୀମାନେ ତାଙ୍କଭିତରୁ ଜଣକୁ ଫାଶୀ ଦିଆଯିବ ଏହା ଚିନ୍ତାକରି ଶୋକାକୁଳ ହୋଇପଡ଼ିଲେ ।

ପରମ୍ପରା ଅନୁସାରେ ମୃତ୍ୟୁଦଣ୍ଡ ପାଇଥିବା ବ୍ୟକ୍ତିକୁ ତାର ଶେଷ ଇଚ୍ଛା ପଚରା ଯାଇଥାଏ । ଏଣୁ ବ୍ରହ୍ମପୁର ଜେଲ ଅଧିକାରୀ ଲକ୍ଷ୍ମଣ ନାୟକଙ୍କୁ ଯେତେବେଳେ ପଚାରିଲେ ସେ କହିଲେ, "ମୁଁ ମୋର ସାଙ୍ଗରେ ଯେତେଲୋକ ଜେଲରେ ଅଛନ୍ତି ସମସ୍ତଙ୍କୁ ଦେଖାକରିବାକୁ ଚାହେଁ, ଆଉ ସମସ୍ତଙ୍କ ସହିତ ମିଶି ସେମାନେ ଯାହା ଖାଉଛନ୍ତି ତାହା ଖାଇବାକୁ ଚାହେଁ ।" ସମସ୍ତଙ୍କ ସହିତ ମିଶି ପଂକ୍ତିଭୋଜନରେ ଖାଇବାର ଇଚ୍ଛା, ତାଙ୍କର ସମସ୍ତଙ୍କ ପ୍ରତି ସହୃଦୟତାର ଯେଉଁ ପରିଚୟ ଦେଇଥିଲା ତାହା ସେଦିନର ଅନୁଭବୀମାନେ ନିଶ୍ଚୟ ଜାଣିପାରିଥିବେ ।

ସେଦିନ ସନ୍ଧ୍ୟାରେ ଲକ୍ଷ୍ମଣ ନାୟକ ଜେଲରଙ୍କଠାରୁ ଜାଣିବାକୁ ପାଇଲେ ରାଧାକୃଷ୍ଣ ବିଶ୍ୱାସରାୟ, ରାଧାମୋହନ ସାହୁ ଓ ସଦାଶିବ ତ୍ରିପାଠୀ ତାଙ୍କ ସହିତ ଶେଷଥର ପାଇଁ

ଦେଖା କରିବାକୁ ଯାଉଥାନ୍ତି । ସେଦିନ ରାତିରେ ଦୁଃଖରେ ରାଧାକୃଷ୍ଣ ବିଶ୍ୱାସରାୟ ଓ ରାଧାମୋହନ ଏତେ ଭାଙ୍ଗି ପଡ଼ିଲେ ଯେ ଶେଷଥର ପାଇଁ ଲକ୍ଷ୍ମଣ ନାୟକଙ୍କୁ ଦେଖିବା ହୋଇପାରିଲା ନାହିଁ । ରାଧାକୃଷ୍ଣ ବିଶ୍ୱାସରାୟ ଫାଶୀ କଳ୍ପନା କରି ଚେତା ହରାଇ ପଡ଼ିଗଲେ । ରାଧାମୋହନ ସାହୁଙ୍କ ଆଖିରୁ ଲୁହ ଧାର ଧାର ହୋଇ ବହିଗଲା ଗାଲ ତଳକୁ ।

ମନର ସମସ୍ତ ଦୁଃଖକୁ ମନରେ ଚାପି ସଦାଶିବ ତ୍ରିପାଠୀ ରାତିର ଦ୍ୱିତୀୟ ପ୍ରହରରେ ଲକ୍ଷ୍ମଣ ନାୟକଙ୍କ ୧୪ ନମ୍ବର କୋଠରିରେ ପହଞ୍ଚିଲେ । କିଛି ସମୟ ନୀରବତାରେ କଟି-ଗଲା । କେମିତି ଏକ ଅସହ୍ୟ ଯନ୍ତ୍ରଣା ପ୍ରକାଶି ହବନାହିଁ ଭାଷାରେ, ଆରମ୍ଭ ହେଲା ସଦାଶିବ ତ୍ରିପାଠୀଙ୍କ ମନରେ । ସେତେବେଳେ ଲକ୍ଷ୍ମଣ ଆଖିବୁଜି ଆଣ୍ଠୁମାଡ଼ି ରାମଧୂନ ଗାଉଥିଲେ । ସଦାଶିବ ମନର କୋହକୁ ଚାପି ରଖି ଧୀରେ ଡାକିଲେ, "ଲକ୍ଷ୍ମଣ" । ଲକ୍ଷ୍ମଣ ଆଖି ଖୋଲିଲେ । ସବୁଦିନ ପରି ବସିବା ଜାଗାରୁ ଉଠିପଡ଼ି ଲଇଁଯାଇ ହାତଯୋଡ଼ି ଉଚ୍ଚାରଣ କଲେ, "ଜୁହାର ଆଜ୍ଞା ।" କେମିତି କେଜାଣି ଲକ୍ଷ୍ମଣଙ୍କ ଓଠରୁ ତାଙ୍କୁ ଦେଖି ସ୍ମିତ ହସଟିକିଏ ବାହାରିଗଲା । ସେ ହସ ଯେମିତି ଜଣାଇଦେଲା ଅନ୍ତରର ଭଲପାଇବା ନିର୍ମଳ ଥିଲେ ମୃତ୍ୟୁ ବି ଯେମିତି ମିଛ । ସଦାଶିବ ତ୍ରିପାଠୀ ଆସିଛନ୍ତି ସେଇ ଶେଷ ରାତିରେ ସେତିକି ହିଁ ବଡ଼କଥା ।

ସଦାଶିବ ତ୍ରିପାଠୀ ରହି ରହି ପଚାରିଲେ, "ଲକ୍ଷ୍ମଣ, ତୁମେ ଘରକୁ କିଛି ଖବର ଦେବକି ?" ଲକ୍ଷ୍ମଣ ନାୟକ ସ୍ଥିର । ସେ ଗମ୍ଭୀର ହୋଇ କହିଲେ, "ଆଜ୍ଞା ! ମୁଇଁ କାଇଟା ସାଙ୍ଗିବେ ? ମୋର ସଙ୍ଗର ଭାଇମନ୍ ତ ମରିଲେଇ । ଆରି କେତେ ଯେ କେତେ ଜଇଲ ଥାନେ ଆଛତ୍ ହେଡ଼ିକି ବେଲେ ଆରି କାଇ କାଥା ସାଙ୍ଗବି ଆଜ୍ଞା, କାଇ ଦୁଃଖ ସାଙ୍ଗବି ।" [ ଆଜ୍ଞା ! ମୁଁ ଆଉ କଣ କହିବି ? ମୋର ସାଙ୍ଗଭାଇ ଅନେକ ମଲେ । କେତେ ଜେଲରେ ସଢ଼ୁଛନ୍ତି । ଏମିତି ବେଳେ ମୁଁ ଆଉ କଣ କହିବି ଆଜ୍ଞା ! କେଉଁ ଦୁଃଖକୁ କହିବି ?]

ସଦାଶିବଙ୍କ ମନର କୋହ ଯେମିତି ଗ୍ରୀବ ଫଟାଇ ବାହାରି ଆସିବ । ସେ ମୁହଁ ପୋତିଲେ । ଆଖିରେ ଲୁହ ଟଳମଳ କଲା । ଏମିତି କିଛି ସମୟ କଟିଗଲା । ଲକ୍ଷ୍ମଣ ନାୟକ ତାଙ୍କୁ କହିଲେ, "ଗୋଟେକ୍ କଥା ଆଜ୍ଞା । ଆମେମନ ଯେନ ସ୍ୱରାଜ କାଜେ ଲଗଲୁ ଆଚୁ ହାଇଟା ଦେଖି ନାଇଁପାରି ହେଉଁକି ମୋର ଦୁଖ୍ । ଜୀବେନ୍ ର ଇ ଅଭାବ ହେଲା ।" [ଗୋଟାଏ କଥା ଆଜ୍ଞା । ଆମେମାନେ ଯେଉଁ ସ୍ୱରାଜ ପାଇଁ ଲାଗିଛେ ତାକୁ ଦେଖିପାରିବି ନାହିଁ, ଏହି ମୋର ଦୁଃଖ । ଜୀବନରେ ଏହି ଅଭାବ ରହିଗଲା ।]

ତାପରେ ଲକ୍ଷ୍ମଣ ସଦାଶିବ ତ୍ରିପାଠୀଙ୍କୁ ଅନୁରୋଧ କଲେ "ମୋର ପୁ, ଝି କେ ବିଭା କରାଇଦେବାର୍ ଆଜ୍ଞା ।" [ମୋ ପୁଅ ଝିଅଙ୍କୁ ବିବାହ କରାଇଦେବେ । ] ଜୀବନରେ ଆଉ କିଛି ଅଭିଳାଷ ନାହିଁ । ଲକ୍ଷ୍ମଣ ନାୟକ ଚୁପ୍ ହୋଇଗଲେ । ବ୍ରହ୍ମପୁର ଜେଲର ସେଇଦିନ ରାତିର ହୃଦୟ ଯେମିତି ଲୁହମୟ ହୋଇଗଲା ।

ଆଖିରେ ଲୁହ, କଣ୍ଠରେ କୋହ ନେଇ ସଦାଶିବ ବାବୁ ଖାଲି ଏତକ କହିଲେ, "ଲକ୍ଷ୍ମଣ ! ତୁମେ ଧନ୍ୟ । ଭାରତମାତାର ତୁମେ ଯୋଗ୍ୟ ପୁଅ ।" ସେ ଫେରିଆସିଲେ ସେଇ କୋଠରିକୁ । ସେଣ୍ଟ୍ରି ପୁଣିଥରେ କୋଠରି ନମ୍ବର ୧୮ର ତାଲା ବନ୍ଦକଲା ।

୨୮-୩-୧୯୪୩ ରାତସାରା ଜେଲ ଭିତରେ ଥିବା ସମସ୍ତ ସଂଗ୍ରାମୀ ବିବ୍ରତ, ଅସ୍ଥିର, ଉଦବିଗ୍ନ ହୋଇପଡିଲେ । ଖାଲି ଶୁଭିଲା ପ୍ରାର୍ଥନା । ନାମ ଭଜନ । ନବକୃଷ୍ଣ ଚୌଧୁରୀ ଓ ଅନ୍ୟମାନେ ବଡପାଟିରେ କାନ୍ଦୁଥିଲେ । ଲକ୍ଷ୍ମଣଙ୍କ ଜୀବନର ଅନ୍ତିମ ରାତି ଅଶ୍ରୁସ୍ନାତ ହୋଇଗଲା । ସେଇ ଲୁହରେ ଯେମିତି ଲୁଚି ରହିଥିଲା ସବୁଠାରୁ ପ୍ରିୟ ମଣିଷ ପାଇଁ ଅମରତ୍ୱର ଅମୃତ ।

ଜେଲ ଘଣ୍ଟାରେ ବାଜିଲା ୦°, ୦°, ୦୦, ହୋଇ ରାତି ଚାରିଟା । ଆଉ ଦୁଇଘଣ୍ଟା ପରେ ସବୁ ଶେଷହୋଇଯିବ ।

## ୧୯ । ଫାଶୀ ଖୁଣ୍ଟେ ଝୁଲିଲା ବେଳ

ଦୁଇଜଣ ସେଣ୍ଟ୍ରି ଆସି ଲକ୍ଷ୍ମଣଙ୍କୁ ଉଠାଇଲେ । ତାଙ୍କୁ ନିତ୍ୟକର୍ମ କରାଇଲେ । ଉପସ୍ଥିତ ବାରିକ ତାଙ୍କର ଦାଢ଼ି କାଟିଲା । ଶେଷଥର ପାଇଁ ସେ ଗାଧୋଇଲେ । ସଫା ଧୋଇକାନାରେ କାରାଗାର ପଡ଼ିଥିବା ପୋଷାକ ପିନ୍ଧିଲେ । ସତେ ଯେମିତି ନିତ୍ୟନୈମିତ୍ତିକ କଥା । ତାପରେ ଶେଷଥର ପାଇଁ ହାତଯୋଡ଼ି ନମସ୍କାର କଲେ ଭଗବାନଙ୍କୁ ଆଉ ସ୍ୱତଃସ୍ଫୂର୍ତ୍ତି ଭାବେ ଗାଇଉଠିଲେ ଗାନ୍ଧିଜୀଙ୍କର ସବୁଠୁ ଅତି ପ୍ରିୟ ଭଜନ—

ବୈଷ୍ଣବ ଜନତୋ ତେନ କହିୟେ ରେ
ଯେ ପୀଡ଼ ପରାଇ ଜାନରେ ।

ପର ଦୁଃଖ ଉପକାର କରେ ତୋହି
ମନ ଅଭିମାନ ନା ଆନେରେ ।। ୧ ।। × × ×

ଏହି ପାବନ ପ୍ରାର୍ଥନାର ଭକ୍ତିବିହ୍ୱଳିତ ଧ୍ୱନି ଯେମିତି ଶେଷଥର ପାଇଁ କୋଠରି ୧୮କୁ ଶାନ୍ତିମଗ୍ନ କରିଦେଲା । ବାହାରେ ଛିଡ଼ା ହୋଇଥିବା ଦୁଇଜଣ ସେଣ୍ଟ୍ରିଙ୍କ ମନରେ ଯେମିତି ଦୁଃଖର ପାହାଡ଼ । କର୍ତ୍ତବ୍ୟଦାୟିତ୍ୱରେ ସେମାନେ ଚଞ୍ଚଳ ହୋଇଉଠିଲେ । ସମୟ ହୋଇଯାଉଛି । ତାପରେ ସେମାନେ ଲକ୍ଷ୍ମଣଙ୍କ ଦୁଇହାତକୁ ପଛପଟକୁ ନେଇ ବାନ୍ଧି ଚାଲିଲେ । ଫାଶୀଖୁଣ୍ଟକୁ ଗଲାବେଳେ ସେ ଆଉ ଭାବିଲେ ନାହିଁ ନିଜ କଥା । ଶୁଣିଲେ ନାହିଁ ଜେଲ ଭିତରେ ଥିବା ସମସ୍ତ ଅନ୍ତେବାସୀଙ୍କର କରୁଣ କ୍ରନ୍ଦନ—ଭାରତମାତାକୀ ଜୟ , ମହାତ୍ମା ଗାନ୍ଧୀକି ଜୟ, ବନ୍ଦେ ମାତରଂର ଉତ୍ତେଜିତ ଧ୍ୱନି । ସେ ମଗ୍ନ ଭାବେ ଗୁଣୁଗୁଣୁ ହେଉଥିଲେ :

ରଘୁପତି ରାଘବ ରାଜାରାମ, ପତିତପାବନ ସୀତାରାମ
ଈଶ୍ୱର ଆଲ୍ଲା ତେରେ ନାମ, ସବ୍‌କୋ ସନମତି ଦେ ଭଗବାନ ।

ସମସ୍ତଙ୍କ ଭଲମତି ଦେବାପାଇଁ ଯେମିତି ଲକ୍ଷ୍ମଣ ନାୟକ ଶେଷ ପ୍ରାର୍ଥନାରେ ଭଗବାନଙ୍କୁ ଆକୁଳ ନିବେଦନ ଜଣାଇଲେ ।

ଜେଲର ଯେତେବେଳେ ତାଙ୍କୁ ତାଙ୍କର ଶେଷ ଇଚ୍ଛା ପଚାରିଲେ ଲକ୍ଷ୍ମଣ ନିଜର ଅଖଣ୍ଡ ଆଶା ଓ ବିଶ୍ୱାସକୁ ନେଇ କହିଲେ, "ଯେବେ ସୂର୍ଯ୍ୟ ଚନ୍ଦ୍ର ସତ୍ୟ ତାହାହେଲେ ମୋର ଭାରତମାତା ନିଶ୍ଚୟ ସ୍ୱାଧୀନ ହେବ । ଏବେ ମୋତେ ଫାଶୀଖୁଣ୍ଟକୁ ବାଟ କଢ଼ାଅ ।"

ଜେଲ ଘଣ୍ଟାରେ ସକାଳ ପାଞ୍ଚଟା ବାଜିଲା । ଲକ୍ଷ୍ମଣ ନାୟକଙ୍କୁ ବ୍ରହ୍ମପୁର ଜେଲ ପରିସର ମଧ୍ୟରେ ଥିବା ଫାଶୀ ମଞ୍ଚକୁ ନିଆଗଲା । ଆଇନ ଅନୁଯାୟୀ ପୂରୁଷ୍ଟୁରୁରେ ଫାଶୀକାମ ତୁଲାଇବା ପାଇଁ ଜେଲର ନାୟୀର ସେଠାରେ ଉପସ୍ଥିତ ରହିଲେ । ଫାଶୀମଞ୍ଚରେ ଲକ୍ଷ୍ମଣଙ୍କୁ ଛିଡ଼ାକରାଗଲା । ତାପରେ ପୃଥିବୀର ଦୃଶ୍ୟ ଦେଖିବା ପାଇଁ ଆଉ ସୁଯୋଗ ରହିଲା ନାହିଁ ତାଙ୍କର । ଜେଲ ଜମାଦାର ରାମମୂର୍ତ୍ତି ତାଙ୍କ ମୁଣ୍ଡରେ କଳାକନାରେ ତିଆରି ଘୋଡଣିଟିଏ ବେକଯାଏଁ ଘୋଡ଼ାଇଦେଲା ।

ଜେଲର୍ ନାୟୀର ହାତଘଣ୍ଟାକୁ ଚାହିଁଲେ । ସଙ୍କେତ ଦେଲେ ରାମମୂର୍ତ୍ତିକୁ । ଗୋଟିଏ ମୁହୂର୍ତ୍ତ—ତାପରେ ଜମାଦାର ଟାଣିଦେଲା ଲିଭରଟିକୁ (ଲୁହାଦଣ୍ଡ ଯାହା ଫାଶୀ ନେବା ଲୋକ ଛିଡ଼ା ହୋଇଥିବା ପଟାରେ ଲାଗିଥାଏ) ଆଉ ପାଦତଳୁ ଖସିଗଲା ପଟା । ଦେହର ସବୁ ଓଜନ ନେଇ ଦେହ ଝୁଲିପଡ଼ିଲା ଶୂନ୍ୟ ଗହ୍ୱରକୁ । ଋଷି ଚୁପି ହୋଇଗଲା ବେକରେ । କିଛି ସମୟ ପାଦ ଚଟପଟ ହେଲା—ତାପରେ ବେକ ଝୁଲିପଡ଼ିଲା ଗୋଟାଏ ପାଖକୁ । ମୃତ୍ୟୁର ଶୀତଳ ଆଲିଙ୍ଗନରେ ସ୍ଥିର ହୋଇଗଲା ଦେହଟି, ଯାହା ଦିନେ ଅଗ୍ନିମୟ ବିପ୍ଳବର ଖବ୍ର ତାପରେ ଝଲସାଇ ଦେଇଥିଲା ଦେଶ ଓ ଦଶର ମୁକ୍ତିକାମୀ ପ୍ରାଣକୁ ।

ତାପରେ ହାତର ନାଡ଼ି ଚିପି ଡାକ୍ତର ପ୍ରାଣନାଥ ଶ୍ରେଷ୍ଟସ୍ୱାମୀ କହିଲେ, "ଲକ୍ଷ୍ମଣ ନାୟକଙ୍କ ମୃତ୍ୟୁ ହୋଇସାରିଛି ।" ଡାକ୍ତରଙ୍କ ମୃତ୍ୟୁ ପ୍ରମାଣପତ୍ରରେ ଇଂରେଜ ମାଜିଷ୍ଟ୍ରେଟ ସ୍ଥାନ ଦସ୍ତଖତ ଦେଲେ । ଆଉ ତାଙ୍କ ମୃତ୍ୟୁକୁ ଆଇନ ଅନୁଯାୟୀ ସ୍ୱୀକାର କରାଗଲା ।

ଯେତେବେଳେ ଏହି ଖବର ଜେଲସାରା ବ୍ୟାପିଗଲା ଏମିତି ଛନ୍ଦନରୋଳ ଉଠିଲା ଯେ କିଛି ସମୟ ପାଇଁ ବଧିର ହୋଇଗଲା ସମସ୍ତ ପରିବେଶ । ଯେତେବେଳେ ସମସ୍ତେ ଥମିଗଲେ, କ୍ରନ୍ଦନ ବଦଳିଗଲା କୋହରେ । ରାଷ୍ଟ୍ରିପ୍ରବର ଗୋପବନ୍ଧୁ ଚୌଧୁରୀ ସମସ୍ତଙ୍କୁ ଲକ୍ଷ୍ୟକରି କହିଲେ "ଆଉ କାହିଁକି ? ସେ ଆଉ ଶୁଣିପାରିବ ନାହିଁ ।"

ଲକ୍ଷ୍ମଣଙ୍କ ଫାଶୀ ପରେ ବି ଶାସକଗୋଷ୍ଠୀର ବର୍ବରତା ଅଟକିଲା ନାହିଁ । ତାଙ୍କ ମୃତ୍ୟୁ ଖବର ତାଙ୍କର ପରିବାର ବା ବନ୍ଧୁବାନ୍ଧବଙ୍କୁ ଜଣାଇ ଦିଆଗଲା ନାହିଁ । ଏପରିକି ତାଙ୍କ ମରଶରୀରକୁ ବ୍ରହ୍ମପୁରର ସମାଜସେବୀମାନଙ୍କ ଅନୁରୋଧ ସତ୍ତ୍ୱେ ଦେବାଇ ଦିଆଗଲା ନାହିଁ । ସହିଦ ଲକ୍ଷ୍ମଣ ନାୟକଙ୍କୁ ଉପଯୁକ୍ତ ସମ୍ମାନ ସହ ତାଙ୍କ ଶବ ସତ୍କାର କରିବା ପାଇଁ ସେମାନେ ଯେଉଁ ଆବେଦନ କଲେ ତାହା ଅଗ୍ରାହ୍ୟ କରିଦିଆଗଲା । ଲକ୍ଷ୍ମଣ ନାୟକଙ୍କ ଶବକୁ ଜେଲ କର୍ମଚାରୀମାନେ ଜେଲ ପରିସର ମଧ୍ୟରେ ପୋତିଦେଲେ ।

ଏଣେ ଜୟପୁର ରାଜକର୍ମଚାରୀ ଓ ସରକାରୀ ଲୋକମାନେ ଲକ୍ଷ୍ମଣ ନାୟକଙ୍କ ମୃତ୍ୟୁରେ ଏତେ ଖୁସି ହୋଇଗଲେ ଯେ କହିବାକୁ ନାହିଁ । ରଜାଙ୍କ ପାଇକ ଓ ପୋଲିସ ଗାଁକୁ ଗାଁ ବୁଲି ଟମକମା ବଜାଇ ଘୋଷଣା କରିବାକୁ ଲାଗିଲେ ଯେ ଲକ୍ଷ୍ମଣକୁ ଫାଶୀ ଦିଆଯାଇଛି । ଯିଏ ସରକାର ବିରୁଦ୍ଧରେ ଯିବ ସିଏ ଏହି ସଜା ପାଇବ । ଲୋକଙ୍କ ମନରେ ଭୟ ଓ ଆତଙ୍କ ସୃଷ୍ଟି କରି ସେମାନଙ୍କୁ ଶାସନ କରିବାର ଏହା ଏକ କୌଶଳ ଥିଲା । ଏହି ଟମକମା ଘୋଷଣାରୁ ଲକ୍ଷ୍ମଣଙ୍କ ପୁଅ ରଘୁନାଥ ଏହି ମର୍ମନ୍ତୁଦ ଦାରୁଣ ସମ୍ବାଦ ଜାଣିପାରିଲେ । ଲକ୍ଷ୍ମଣ ସହିଦର ମୃତ୍ୟୁ ପାଇଲେ ।

ସେଦିନ ସାରା ବ୍ରହ୍ମପୁର ଜେଲ୍‌ର ସଂଗ୍ରାମୀ ଓ ଅନ୍ୟ ଦଣ୍ଡ ଭୋଗୁଥିବା ଅପରାଧୀ-ମାନେ ନିର୍ଜଳ ଉପବାସ କଲେ । ସନ୍ଧ୍ୟାରେ ଏକ ସାମୂହିକ ପ୍ରାର୍ଥନା ସଭାରେ ତାଙ୍କୁ ହୃଦୟର ଗଭୀର ଶ୍ରଦ୍ଧାଞ୍ଜଳି ଦିଆଗଲା । ସେହି ସନ୍ଧ୍ୟାରେ ଜାତୀୟକବି ବୀରକିଶୋରଙ୍କ ରଚିତ ଶୋକଗୀତ ଗାନକରାଗଲା ଯହିଁରେ ଲକ୍ଷ୍ମଣ ନାୟକ ପୁନା ଜେଲରେ ବନ୍ଦୀ ଥିବା ମହାତ୍ମାଙ୍କ ପ୍ରତି ସମ୍ମାନ ଜଣାଇଥିଲେ, "ମୋ ପାଇଁ ଦୁଃଖ କରନାହିଁ, ମୁଁ ତ ମରିନାହିଁ । ମୋର ଅନ୍ତ କିଛି ନାହିଁ—ସ୍ମୃତିର ସମ୍ଭାର ନେଇ ମୁଁ ଯାଉଛି ଏ ପୃଥିବୀକୁ ଛାଡ଼ି, ମୋ ଜୀବନଦୀପକୁ ଲିଭାଇ । ସ୍ୱର୍ଗରୁ ଆକାଶରୁ ମୁଁ ତୁମକୁ ଦେଖୁଥିବି ରହି । ଏହା ମୋ ପାଇଁ ଖୁସିର ଦିନ ଯେ ନିର୍ଦ୍ଦୋଷ ହୋଇ ବି ଫାଶୀଖୁଣ୍ଟରେ ଝୁଲିବା ପାଇଁ ପଠା ହୋଇଛି । ହେ ପୁନା, ମୁଁ ମୋର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି, ମୁଁ ମୋ ଦେଶପାଇଁ ଜୀବନ ଦେଉଛି ।"

ସ୍ୱାଧୀନତା ପଥରେ ଯେଉଁମାନେ ବଳି ହୋଇଯିବା ପାଇଁ ନିଜର ସମସ୍ତ ଆନନ୍ଦ, ହର୍ଷ ତ୍ୟାଗକରି ଦୁଃଖ କଷଣ ବରଣକରନ୍ତି, ଅନ୍ୟାୟ ବର୍ବରତାର ନୃଶଂସ ହାତରେ ନିର୍ଯାତିତ ହୋଇ ବି ଭୁଲନ୍ତି ନାହିଁ ଜୀବନର ଲକ୍ଷ୍ୟ । ଭୁଲନ୍ତି ନାହିଁ 'ବନ୍ଦେ ମାତରଂ' ଧ୍ୱନି । ସେମିତି ମଣିଷଠାରେ ବର୍ବରତା ମୁଣ୍ଡନୁଆଁଏ । ସେମିତି ମଣିଷର ଜାତକରେ ମୃତ୍ୟୁ ନଥାଏ । ସେମାନେ ମୃତ୍ୟୁଞ୍ଜୟୀ, ଅମର, ଅକ୍ଷୟ ହୋଇଥାନ୍ତି ।

## ୨୦ । ରଖିଗଲ ଓଡ଼ିଶାର ଟେକ

ସ୍ୱାଧୀନତା ଯେ ମଣିଷର କେତେ ପ୍ରିୟ ସେମାନେ ବୁଝିଥିଲେ ବୋଲି ତ ସମର୍ପି ଦେଇଥିଲେ ଧନ ଜନ ଯୌବନ ଏପରିକି ନିଜର ଜୀବନ । ପରାଧୀନ ଭାରତକୁ ସ୍ୱାଧୀନ କରିବେ ବୋଲିତ ତିରଙ୍ଗା ପତାକାର ଜୟଗାନ ଗାଇ ସହିଦ ହୋଇଗଲେ ଲିଙ୍ଗ ଭୂମିଆ, ନକୁଳ ମାଡ଼କାମୀ, ସମରସ୍ତ ନାୟକ, ଅର୍ଜୁନ ବୁଝିଆ, ନରସିଂହ ଡମ୍ବୁ, ଗୋମ୍ପି ପୂଜାରୀ ଓ ବଳରାମ ଭୂମିଆ । ଶାସକଗୋଷ୍ଠୀର ଚକାନ୍ତର ଶିକାର ହୋଇ ନବରଙ୍ଗପୁର ଜେଲ, କୋରାପୁଟ ଜେଲରେ ହସି ହସି ମୃତ୍ୟୁବରଣ କଲେ ସଦାଶିବ ବେହେରା, ଡମ୍ବରୁ ତେଲିଆ ଓ ଆହୁରି କେତେ ।

୨୪-୮-୧୯୪୨ରେ ରକ୍ତତୀର୍ଥ ପାପଡ଼ାହାଣ୍ଡିରେ ଶାସକର କ୍ରୂରତାକୁ ଭ୍ରୂକ୍ଷେପ ନକରି ଯେଉଁମାନେ ଢଳିପଡ଼ିଲେ ବନ୍ଧୁକ ଗୁଳିରେ, ଯେଉଁମାନଙ୍କ ରୁଧିର ରକ୍ତରେ ଲାଲହୋଇଗଲା ଝିଷ୍ଟି ନଦୀର ପାଣି, ସେଇ ନବରଙ୍ଗପୁର ଅଞ୍ଚଳର ବନ୍ଧୁଗଣ ଭଡରା, ସନୁଭତ୍ରା, ବଳଭଦ୍ରା, ରତନ ରନ୍ଧାରୀ, ଶୁକୁ ମୁଦୁଲି ।

ଏମାନେ ଗାନ୍ଧୀଙ୍କୁ ଦେଖିନଥିଲେ, କିନ୍ତୁ ଭୋଗିଥିଲେ ପରାଧୀନତାର ବର୍ବରତାକୁ ନିଜ ଦେହରେ । ଏଣୁ ଗାନ୍ଧୀଙ୍କ ବତାଇବା ମାର୍ଗରେ ଏମାନେ ଏମିତି ଚାଲିଲେ ଯେ ସ୍ୱାଧୀନତା ପାଇବା ଆଉ କଷ୍ଟକର ହେଲାନାହିଁ ଏମାନଙ୍କ ପକ୍ଷେ । ଅହିଂସାର ପତାକା ଧରି ଦେଶମାତୃକାର ପାଦତଳେ ନିଜକୁ ସମର୍ପିଦେଇ ସହିଦ ହେବା ଯେଉଁ ମହାନ୍ ଆତ୍ମାମାନଙ୍କ ପକ୍ଷେ ସମ୍ଭବ ହୋଇପାରିଥିଲା ସେମାନଙ୍କ ମଧ୍ୟରେ ଲକ୍ଷ୍ମଣ ନାୟକ ହୋଇଗଲେ ଏକ ଉଜ୍ଜ୍ୱଳ ନକ୍ଷତ୍ର ।

ଅଜ୍ଞାନର ଅନ୍ଧକାର, କୁସଂସ୍କାର, ଅନ୍ଧବିଶ୍ୱାସ, ଅନନ୍ୟ ରାଜଭକ୍ତିକୁ ନେଇ ପରମ୍ପରାକୁ ମାନି ଚଳୁଥିବା ଆଦିବାସୀଙ୍କ ମନରେ ବିଦେଶୀ ଶାସକ ବିରୋଧରେ ଏକଜୁଟ କରିବା ଯେତେବେଳେ ମୋଟେ ସମ୍ଭବ ନଥିଲା ସେମିତି ଏକ ସନ୍ଧିକ୍ଷଣ ମୁହୂର୍ତ୍ତରେ ଲକ୍ଷ୍ମଣ ନାୟକ ମାଲକାନଗିରି ଅଞ୍ଚଳରେ ଯେଉଁ ନେତୃତ୍ୱ ଦେଲେ ତାହା କଳ୍ପନାର ବାହାରେ । ମୃତ୍ୟୁର ଅଲ୍ପଦିନ ପୂର୍ବରୁ ନିଜ ଦେଶର ଆଦିବାସୀ, ହରିଜନ, ଦଳିତ, ଶୋଷିତ, ପୀଡ଼ିତ ଲୋକଙ୍କ ପାଇଁ ତାଙ୍କ ମନରେ ଯେଉଁ ସ୍ନେହ ଶ୍ରଦ୍ଧା ଥିଲା ତାହା ଲକ୍ଷ୍ମଣ ନାୟକ, ବିଶ୍ୱମ୍ଭର ପରିଡ଼ାଙ୍କୁ କହିଥିଲେ :

"ଏହା ଆମର ଶେଷ ସଂଗ୍ରାମ । ମୁଁ ଜାଣେ ମୁଁ ମରିବି । ଆମ ଦେଶ ନିଶ୍ଚୟ ସ୍ୱାଧୀନ ହେବ । ଦେଶକୁ ଶାସନ କରିବା ପାଇଁ କଂଗ୍ରେସ ଉପରେ ଦାୟିତ୍ୱ ପଡ଼ିବ । ଯେଉଁମାନେ କଂଗ୍ରେସ ତରଫରୁ ଶାସନ କରିବେ ସେମାନଙ୍କୁ ମୁଁ ଅନୁରୋଧ କରୁଛି ଯେ ସେମାନେ ମୋ ଦେଶର ଅଗଣିତ ଗରିବକୁ ପିନ୍ଧିବାକୁ ଖଣ୍ଡିଏ ଲୁଗା, ପେଟପୁରା ଖାଇବାକୁ ଯୋଗାଇଦେବେ । ସେ ବ୍ୟବସ୍ଥା କଲେ ମୋର ଆତ୍ମା ଶାନ୍ତି ପାଇବ ।"

ଲକ୍ଷ୍ମଣ ନାୟକ ନିଃସ୍ୱାର୍ଥପରତାର ପ୍ରତୀକ ଥିଲେ । ଥିଲେ ଅହିଂସାର ପରମ ପୂଜାରୀ । ସଚ୍ଚା ଗାନ୍ଧୀବାଦୀ । ଏକ ଶୋଷଣହୀନ ସମାଜର ସେ ସ୍ୱପ୍ନ ଦେଖିଥିଲେ—ଯେଉଁଠି ଅତ୍ୟାଚାର, ପୀଡ଼ା, ଯାତନା, ଦୁଃଖ ଓ ଯନ୍ତ୍ରଣା ନଥିବ । ଶାସନ ଓ ଶାସକ ମଣିଷର ସେବା ପାଇଁ ତତ୍ପର ରହିବେ । ଗୋଟିଏ ସୁଖୀ ସମାଜ ହେବ ଦେଶରେ, ସମସ୍ତେ ଗ୍ରାମସ୍ୱରାଜର ଫଳ ଭୋଗିବେ ।

ଏହି ସ୍ୱପ୍ନର ସଫଳ ରୂପାୟନ ହେବା ପୂର୍ବରୁ ତାଙ୍କ ଯାତ୍ରା ସରିଗଲା । ଦେଶକୁ ଭଲପାଇଥିଲେ ବୋଲି ତାଙ୍କୁ ଫାଶୀର ଚରମ ଦଣ୍ଡ ମିଳିଲା । ବଣର ଚିର ସବୁଜିମାରେ, ପବନର ମର୍ମରରେ, ଝରଣାର କୁଳୁକୁଳୁ ଧ୍ୱନିରେ ପକ୍ଷୀର କୂଜନରେ,କ୍ଷେତର ହିଲଦିଆ ପାଚିଲା ଧାନକେଣ୍ଡାରେ, ମାଣ୍ଡିଆର ଡଙ୍ଗରରେ, ଅଳସୀର ସୁନା ସୋରିଷିଆ ଫୁଲର ସୌନ୍ଦର୍ଯ୍ୟରେ, ମେହନତୀ ମଣିଷର ହସ ହିଁ ଶୁଭିବ ବୋଲି ସେ ନିଜ ଜୀବନର ସବୁ ସୁଖ ଛାଡ଼ିଦେଲେ । ଅମରତ୍ୱର ଅମୃତ ପିଇ ତାଙ୍କ ମୃତ୍ୟୁ ଦେଶପାଇଁ ଦେଇଗଲା ଚିରନ୍ତନ ସନ୍ଦେଶ "ଜନନୀ ଓ ଜନ୍ମଭୂମି ସ୍ୱର୍ଗଠାରୁ ବଡ଼ ।"

ଲକ୍ଷ୍ମଣ ନାୟକଙ୍କ ଦେଶପାଇଁ ଚରମ ବଳିଦାନ ତାଙ୍କୁ ଛିଡ଼ାକରାଇଦିଏ ବିହାରର ସାନ୍ତାଳୀବୀର ବିର୍ସାମୁଣ୍ଡା, ଓରାଓଁ ବୀର ଯାତ୍ରା ଭଗତ, ଛତିଶଗଡର ବୀର ନାରାୟଣ ସିଂହ, ଆନ୍ଧ୍ର ପ୍ରଦେଶର ତୋମାଦୋରା ଓ ଆଲୁରି ସୀତାରାମ ରାଜୁ, ପଞ୍ଜାବର ଭଗତସିଂ, ସୁଖଦେବ, ରାଜଗୁରୁଙ୍କ ସହିତ ଏକାଧାଡ଼ିରେ ଯେଉଁମାନେ ହସି ହସି ଦେଶପାଇଁ ପ୍ରାଣ ଦେଇଗଲେ । ସେମାନଙ୍କ ପାଇଁ ତ ଆମେ ସ୍ୱାଧୀନତାର ସ୍ୱର୍ଣ୍ଣସକାଳ ଦେଖିପାରିଲୁ ?

ଲକ୍ଷ୍ମଣ ନାୟକ ଜୀବନରେ ଯେତିକି ମହାନ୍ ଥିଲେ ମୃତ୍ୟୁରେ ସେତିକି ପୂଜନୀୟ ହୋଇଗଲେ । ତାଙ୍କର ଚରମ ବଳିଦାନକୁ ସ୍ମରଣ କରି ଏ ମାଟିର କବି ଏମିତି ଗାଇଗଲା ତା ହୃଦୟର ଆବେଗକୁ—

ଲକ୍ଷ୍ମଣ ନାୟକ ହେ ଲକ୍ଷ୍ମଣ ନାୟକ
ଦେଶଲାଗି ଫାଶୀଖୁଣ୍ଟେ
ଝୁଲିଇଲ ବେକ
ରଖିଗଲ ଓଡ଼ିଶାର ଟେକ ।

ବୀର ଲକ୍ଷ୍ମଣଙ୍କର ମୃତ୍ୟୁ ନାହିଁ । ସମସ୍ତଙ୍କ ହୃଦୟରେ ସେ ସଞ୍ଜୀବିତ, ସେ ଅମର ସହିଦ ।

---

# ମହାପୁରୁଷଙ୍କ ଜୀବନୀ

ଶ୍ରୀକୃଷ୍ଣ
ଶ୍ରୀମଦ୍ ଶଙ୍କରାଚାର୍ଯ୍ୟ
ଶ୍ରୀ ରାମକୃଷ୍ଣ ପରମହଂସ
ସ୍ୱାମୀ ବିବେକାନନ୍ଦ
ଶ୍ରୀ ଅରବିନ୍ଦ
ପ୍ରଭୁଗୁରୁ ମହିମାସ୍ୱାମୀ
ଗୁରୁ ନାନକ
ଶ୍ରୀଚୈତନ୍ୟ
ଗୌତମ ବୁଦ୍ଧ
ମହାଯୋଗୀ ଗୋରଖନାଥ
ଶ୍ରୀ ରାମାନୁଜାଚାର୍ଯ୍ୟ
ସୁର ଦାସ
ସ୍ୱାମୀ ଶିବାନନ୍ଦ
ସ୍ୱାମୀ ଦୟାନନ୍ଦ
ପରମହଂସ ଯୋଗାନନ୍ଦ
ସ୍ୱାମୀ ନିଗମାନନ୍ଦ
ମୀରାବାଈ
ନରସିଂହ ମେହେଟା
ସନ୍ଥ ଜ୍ଞାନେଶ୍ୱର
ସନ୍ଥ ଏକନାଥ
ସନ୍ଥ ତୁକାରାମ
ସନ୍ଥ କବୀର
ରମଣ ମହର୍ଷି
ସ୍ୱାମୀ ରାମତୀର୍ଥ
ସନ୍ଥ ରାମଦାସ
ସିରିଡ଼ି ସାଇବାବା
ମହାପୁରୁଷ ସ୍ୱାମୀ ଶିବାନନ୍ଦ
ଶ୍ରୀ ଅଭିରାମ ପରମହଂସ
ଭକ୍ତ କବି ଭୀମ ଭୋଇ
ମୋ ଜୀବନକାହାଣୀ (ବାପୁଜୀ)
ଲୋକମାନ୍ୟ ବାଳଗଙ୍ଗାଧର ତିଳକ
ଲାଲା ଲଜପତରାୟ

ମହାନ୍ ବିପ୍ଳବୀ ଚନ୍ଦ୍ରଶେଖର ଆଜାଦ
ରାମମୋହନ ରାୟ
ଶହିଦ୍ ଭଗତ ସିଂହ
ଶହୀଦ କୁଅଁର ସିଂହ
ପଣ୍ଡିତ ଜବାହରଲାଲ ନେହେରୁ
ଶ୍ରୀମତୀ ଇନ୍ଦିରା ଗାନ୍ଧୀ
ନେତାଜୀ ସୁଭାଷଚନ୍ଦ୍ର
ଏମିତି ଥିଲେ ଆମ ବାପୁଜୀ
କୃଷ୍ଣ ଚରିତ
ଆମ ମଧୁବାବୁ
ଶ୍ରୀ ଜୟଦେବ
ଉପେନ୍ଦ୍ର ଭଞ୍ଜ
ବିଶ୍ୱକବି ରବୀନ୍ଦ୍ରନାଥ
ଉତ୍କଳଗୌରବ ମଧୁସୂଦନ
ମହାମାନବ ଗୋପବନ୍ଧୁ
ଜ୍ୟୋତିର୍ବିଜ୍ଞାନୀ ପଠାଣି ସାମନ୍ତ
ନେତାଜୀ ସୁଭାଷ
ମହାମନା ମଦନମୋହନ ମାଲବ୍ୟ
ଫକୀରମୋହନ ଆତ୍ମଜୀବନ ଚରିତ
ଲାଲବାହାଦୁର ଶାସ୍ତ୍ରୀ
ମହାକବି କାଳିଦାସ
ଦିଗ୍‌ଦର୍ଶକ
ଇନ୍ଦୁରୁ ପ୍ରଧାନ ମନ୍ତ୍ରୀ
ଜୀବନ ପଥେ (ରମାଦେବୀ
ବୁଦ୍ଧ ମହାଚରିତ
ମୋ ନିଜ କାହାଣୀ- ୧ମ, ୨ୟ
(ପଣ୍ଡିତ ଜବାହାରଲାଲ୍ ନେହେରୁ)
ଉତ୍କଳମଣି ଗୋପବନ୍ଧୁ
ଦେଶପ୍ରାଣ ମଧୁସୂଦନ
ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ
ମୋର ସ୍ଥାନ (ପଣ୍ଡିତ ଗୋଦାବରୀଶ ମିଶ୍ର)
ଟଲଷ୍ଟୟ ଜୀବନୀ ଓ ଜୀବନଦର୍ଶନ

ପ୍ରକାଶକ/ପ୍ରାପ୍ତିସ୍ଥାନ – ଗ୍ରନ୍ଥମନ୍ଦିର, କଟକ-୨